

# ଆମେ
# ଓ
# ସେମାନେ



ଅଧର ଚନ୍ଦ୍ର ନାଥ

ମୟୂର ପବ୍ଲିକେସନ୍ସ



# ଆମେ ଓ ସେମାନେ

ଅଧ୍ୟକ୍ଷ ଶତ୍ରୁଘ୍ନ ନାଥ

ପ୍ରଥମ ସଂସ୍କରଣ; ୧୯୮୨

ପ୍ରକାଶକ : ମୟୂର ପବ୍ଲିକେସନ୍‌ସ୍
ଭୁବନେଶ୍ୱର

ପ୍ରଚ୍ଛଦପଟ୍ଟ : ସୀମା ମିଶ୍ର

ମୁଦ୍ରଣ : ଶକ୍ତି ପ୍ରେସ
ଭୁବନେଶ୍ୱର-୧

**ମୂଲ୍ୟ—ଛ’ ଟଙ୍କା**
**ବନ୍ଧେଇ : ନଅ ଟଙ୍କା**

"AME O SEMANE"
Prof. Satrughna Nath

Publisher : Mayur Publications
Bhubaneswar—751001

Printed at : Shakti Press
Bhubaneswar-1

Price : Paper Back—Rupees Six only
Hand Bound—Rupees Nine only

( This book has been printed on Paper Supplied by Govt. of India at a concessional rate )

# ନିଜ ତରଫରୁ

"ଆମେ ଓ ସେମାନେ" । ଏମାନେ କିଏ ? ଆମେ ସବୁ । ଆମେ ଓ ଆମ ପିଲେ । ବୟସ ହୋଇଯାଇଛି ଓ ବୟସ ହେଉଛି । ଠିକ୍ କଥାରେ କହିଲେ ଉଭୟଙ୍କର ବୟସ ହେଉଛି, ଫରକଟି କେବଳ ମାତ୍ରାରେ; ସେମାନଙ୍କର ବେଶୀ ଓ ଆମର କମ୍ । କିନ୍ତୁ ଏହାର ପରିଣତି ଖୁବ୍ ଭୟଙ୍କର । କେତେ ଝଣାଝଣି ଓ ଠେଲାଠେଲି ମୋଟା ମୋଟା ରଥ ଦଉଡ଼ି ଆମକୁ ବାନ୍ଧି ପାରୁ ନାହିଁ, ଛିଡ଼ିଯାଉଛି । ଆମେ ସବୁ ଅବୁଝା ଓ ଅବୋଧ ହେଉଛୁଁ । ପାରେଶ୍ୱର ପାହାଚ ଆକାଶ-ପାତାଳକୁ ଯୋଡ଼ି ଦେଉଛି ।

ସେମାନେ ଆମର ଓ ଆମେ ସେମାନଙ୍କର । ଜଣେ ବ୍ୟକ୍ତିର ପରିବାରରେ ଯେପରି, ବିଶ୍ୱ ପରିବାରରେ ସେପରି, ଏଇ କଥାଟି ସତ୍ୟ ! ସତ୍ୟ ହେଉଛି ସମ୍ପର୍କ ଓ ସମ୍ବନ୍ଧ । ସମ୍ବୋଧନ ଭିନ୍ନ ହେଲେହେଁ ସମ୍ବନ୍ଧ ମାତ୍ର ଗୋଟିଏ, ଆମେ ସବୁ ଓ ଆମେ ସମସ୍ତେ । ଏଇ ମନୋଭାବ ଓ ମନର ଭାବ ହୋଇପାରିବ ଏକ ନିବିଡ଼ ସମ୍ପର୍କର ସେତୁ । ବୁଝିବା ଓ କାମ କରିଯିବା ଦେଶ ଓ ଦଶର ପ୍ରଗତି ପାଇଁ । କଳି ପାଇଁ ବେଳ ନାହିଁ । ବେଳ ଓ ବୟସ ଅଛି କେବଳ ସହଯୋଗପାଇଁ ଓ ମିଳିତ ମସୃଧା ପାଇଁ । ଅନ୍ଧପୁଚ୍ଛଳ ବାନ୍ଧ ଆମେ ସବୁ ଅନ୍ଧାର କରି ଦେଉଛୁଁ । ଉନ୍ମୁକ୍ତ ମନରେ ବିଚାର କଲେ ଆମେ ସବୁ ଏ ଯୁଗ ଯନ୍ତ୍ରଣାକୁ ଯୋଗ ଓ ସଯୋଗରେ ପରିଣତ କରିପାରିବା ।

ଗୋଟେ ସାନ ବହିପାଇଁ ଏପରି ବଡ଼ ମୁଖବନ୍ଧ ଲେଖିବାର ପ୍ରୟାସ ହାସ୍ୟାସ୍ପଦ ଜଣାପଡ଼େ । କିନ୍ତୁ ସେହି ବିଚାର ପାଇଁ ଅନେକ ପର୍ଯ୍ୟାଲୋଚନା କରାଯାଇଛି ଓ ପ୍ରବନ୍ଧ ଲେଖାଯାଇଛି । ଯେଉଁ ପତ୍ରପତ୍ରିକା ଓ ପରିସରରେ ଏସବୁ ପ୍ରକାଶ ପାଇଥିଲା ସେଥିପ୍ରତି କୃତଜ୍ଞତା ଜଣାଉଛି । ସେ ସବୁର ନାମୋଲ୍ଲେଖ କରିବା ସମ୍ଭବ ହୋଇପାରୁ ନାହିଁ, କାରଣ ଏ ପ୍ରକାର ଅନେକ ଲେଖା ହଜିଗଲାଣି । କଳେବର ସାନ ହେଲେହେଁ ଦୃଷ୍ଟିକୋଣ ଗ୍ରହଣୀୟ ହେବ, ଏହି ଆଶାରେ ରହିବାକୁ ପଡ଼ୁଛି । ଶେଷରେ ମୟୂର ପବ୍ଲିକେସନଙ୍କୁ ସାବାସ ଜଣାଉଛି ।

୬୮୯, ଶହୀଦ ନଗର
ଭୁବନେଶ୍ୱର

ବିନୀତ ଲେଖକ
ଶିବ୍ରଘୁନାଥ
ଚଉଦ ନଭେମ୍ବର, ଊଣେଇଶ ବୟାଅଶୀ

# ଏ ସଂକଳନଟିରେ ଅଛି

## ଆତ୍ମ



## ସମାଜ

# ପରମାନନ୍ଦ

ନଗରେଶ୍ୱରୀ ଦିଲ୍ଲୀ । ବାଦଶାହୀ ଅମଳର ଶ୍ୱାପରୁଦ୍ଧ ରାଜଧାନୀ ନିଖୋଲ୍ ମନରେ ଖୋଲି କରି ଦେଉଛି ସମସ୍ତ ଭାବନା. ସତେ ଯେପରି ଜାଲିନା ମେଲ ଯାହାରମନ୍ତ୍ର ଏଇଠି ଏକାଥରକେ ମେଞ୍ଚେ ଧୂଆଁ ଛାଡ଼ି ଦେଉଛି । ହୁଁ ହାଁ, ଭୋଁ ଭାଁ, କୋଁ କାଁ, ପେଁ ପାଁ, କେତେ କଅଣ ପାଟି । ଭାରି ଭିଡ଼ । ପ୍ଲାଟଫର୍ମରେ ଷ୍ଟେସନ ଭାଙ୍ଗି ପଡ଼ୁଛି । ଦର୍ଜିବେଳର ବିଜୁଳିବତୀ ଧପ୍ କରି ଜଳିଉଠି ମୁହାଁ ଅନ୍ଧାରର ବେକରେ ଛୁରୀ ମାରି ଦେଉଛି । ସେ ବେଳର ଦାନ୍ତଚିପା ହସ ନାହିଁ । ବୁକୁଫଟା କଲି କଲି ହସର ନୂତନ ଉନ୍ମାଦନା ସୃଷ୍ଟି କରୁଛି । ବାରବୁଲା ବ୍ୟବସାୟୀଙ୍କର ଭଜନ ଭଳି ପାଟିରେ ଗାଡ଼ି ବଗିଗୁଡ଼ା ନୀରବ ।

ସହର ଜୀବନର ଧାଁ-ଧପଡ଼ ଦେଖି ଉପରେ ମେଲ ଗାଡ଼ି ହଠାତ୍ ମୁହଁ ପକାଉଛି । ଏକାଥରକେ ପର୍ ପର୍ ହୋଇ ଦଳେ ଦଳେ ଲୋକ ବାହାରି ଯିବାରୁ ଶୂନ୍ୟଗର୍ଭା ଗାଡ଼ି ଭାଙ୍ଗି ପଡ଼ୁଛି । କୁଲିମାନଙ୍କର ଆନନ୍ଦର ସୀମା ନାହିଁ । ଅସୁମାରି ପ୍ଲାଟଫର୍ମ ଲାଗିଥାଉ, ଏହା ତାଙ୍କ ହୃଦୟର ଡାକ । ପଞ୍ଚବାର୍ଷିକ ଯୋଜନାର ଏମାନେ ଏକ ନମ୍ବର ଶତ୍ରୁ; କିନ୍ତୁ ମାଲମତାର ପୁଟୁଳା ବଢ଼ିଗଲେ, ଏଥିପାଇଁ ସେମାନେ ବ୍ୟାକୁଳ । ସତେ ଯେପରି ଏ ଦେଶକୁ ଧନଧାନ୍ୟରେ ପୂରାଇ ଦେବାକୁ ଦିଲ୍ଲୀର ଯେଉଁ ଚିନ୍ତା ଏମାନେ ତା'ର ଢୋଲ ବାଡ଼ାଉଛନ୍ତି । ଯୁବକ ନରେନ୍ଦ୍ର ଏହି ଭିଡ଼ରେ ବୁଡ଼ି ଯାଉ ନାହାନ୍ତି । ନୂଆ ଆସିଛନ୍ତି; କିନ୍ତୁ ଯଥେଷ୍ଟ ସାହସ, ବିଶ୍ୱାସ ଓ ବଳ ।

ବଡ଼ ଭିଡ଼ରେ ଗଳି । ଖାତିର୍ ନାହିଁ । ଶେଜ, ସୁଟ୍‌କେଶ ଆଉ କେତେ କେତେ ଜିନିଷ । ଦୁଇଟା କୁଲିଙ୍କୁ ବଳୁଛି । ବଡ଼ ଆଶାରେ ପାଦ ପଡ଼ୁଛି । ରାଜଧାନୀର ମନ୍ଦିରରେ ଉନ୍ମତ୍ତ । ବହୁଦିନର ପୁରୁଣା କର୍ମୀଙ୍କୁ ଶ୍ରୀମାନ୍ ନରେନ୍ଦ୍ର ପରିଚିତ କରିଛନ୍ତି । ବହୁ ଚେଷ୍ଟାରେ ସେ କାଠ

ଖାଇଲେ । ଲୋକଙ୍କର ଆଶା ଓ ଭରସାର ସ୍ଥଳ ଶ୍ରୀମାନ ନଗେନ୍ଦ୍ର । ପ୍ରଥମ ଥର ପାର୍ଲାମେଣ୍ଟରେ ସେ ଲୋକପ୍ରତିନିଧି ହୋଇ ପ୍ରବେଶ କରିବେ । ସେ ଶପଥ ନେବେ । ସେ ବିଳାତ ଆମେରିକା ଯିବେ । କେତେ କେତେ ରାଜ୍ୟ ସେ ବୁଲିବେ । କେତେ କମିଟିର ସେ ହେବେ ସମ୍ମାନିତ ସଭ୍ୟ । ଜନପଟୁଆର ତାଙ୍କ ପାଖକୁ ଛୁଟିବ । ଏସବୁର ସ୍ୱପ୍ନ ତାଙ୍କୁ ଘାରୁଛି । ପଚିଶ ହଜାର ପାଞ୍ଚଶ ଦୁଇ ଲୋକମତର ସେ ଅଧିକାରୀ । ନଗେନ୍ଦ୍ରବାବୁ ଅସ୍ଥିର ।

ନବନିର୍ବାଚିତ ଲୋକସଭା ସଦସ୍ୟଙ୍କପାଇଁ ସ୍ୱତନ୍ତ୍ର ଫାଟକ । ପ୍ରଥମ ଶ୍ରେଣୀର ବାହାରେ । ଏହା ରାଷ୍ଟ୍ରସମ୍ମାନର ପ୍ରଥମ ଚିହ୍ନ । ସମ୍ବର୍ଦ୍ଧନାର ବିରାଟ ପଟୁଆର । ସେଠି ବି ନାହିଁ ନ ଥିବା ଭିଡ଼ । ଜନମତର ଅଧିକାରୀ ଜନତାଙ୍କ ଜନାର୍ଦ୍ଦନ ଶ୍ରୀମାନ୍ ନଗେନ୍ଦ୍ରଙ୍କ ଫାଟକ ମୁହଁରେ ପ୍ରଥମ ପାଦ ପଡ଼ିବା ମାତ୍ରେ ସେ କି ସମ୍ବର୍ଦ୍ଧନା ଆଶା କରିଥିବେ କେଜାଣି ତାଙ୍କ ଦୃଷ୍ଟି ଜଣେ ବୃଦ୍ଧଙ୍କ ଉପରେ ପଡ଼ିଲା । ବୃଦ୍ଧ ମଧ୍ୟ ତାଙ୍କ ତୃତୀୟ ଶ୍ରେଣୀର ଜନଜୁଆର ଭାଙ୍ଗି ନ ପାରି କଷ୍ଟେମଷ୍ଟେ ବିଛଣା ଖଣ୍ଡିକ କାଖରେ ପକାଇ ଠେଲିପେଲି ବାହାରିବା ମାତ୍ରେ ଦିଲ୍ଲୀର ସମ୍ବର୍ଦ୍ଧନା ଦେଖିବା ସ୍ଥାନରେ ଦୃଷ୍ଟି ପଡ଼ିଲା ଯୁବକ ଶ୍ରୀମାନ୍ ନଗେନ୍ଦ୍ରଙ୍କ ଉପରେ । କ୍ଷଣେକପାଇଁ ଉଭୟେ ରହିଗଲେ । ଉଭୟଙ୍କ ପ୍ରାଣରେ ବିଜୁଳିବେଗରେ ଆବେଗର ସ୍ପନ୍ଦନ ଖେଳିଗଲା । "ଶ୍ରୀମାନ୍ ନଗ", "ଆଜ୍ଞା, ସାର୍, ଆପଣ ଏଠି ?" "ତୁମେ କେଉଁଠି ?" ଗୁରୁଶିଷ୍ୟଙ୍କର ମିଳନକୁ ଉପେକ୍ଷା କରି ଉଚ୍ଚୋଚ୍ଚାରଳୋଖି କୁଲି ଆଗେଇ ଯାଉଥାଏ । ନଗ ସବୁ ଭୁଲିଗଲେ । କାଳର ଗତି ପରି କୁଲିର ଭ୍ରୂକୁଟୀ ନ ଥାଏ । ନମ୍ରଗତି ହେଲେହେଁ ଗୁରୁଙ୍କର ଅବାରିତ ସ୍ନେହର ପ୍ରବାହ ନଗଙ୍କର ନଭସ୍ପର୍ଶୀ ବିରାଟ ଓ ବିଶାଳ କାୟାକୁ ପ୍ଲାବନ କଲା । ଊର୍ଦ୍ଧ୍ୱଗତି ହେଲେହେଁ ନଗଙ୍କର ଅଟଳ ଭକ୍ତି ଗୁରୁଙ୍କର ଖର୍ବ ଦେହକୁ ସ୍ପର୍ଶ କଲା । ଦୁହେଁ ଅଚଳ ରହିଲେ । ଅଧ୍ୟାପକ ମିଶ୍ରଆ ପାଠର ରାଜନୀତି ଦେଶ ପକ୍ଷରେ ଦାରୁଣ ବିପଦ । ତେଣୁ "ନଗ, ତୁମେ ପଢ଼ । ପଢ଼ା ଶେଷ କର । ତୁମେ ତରବର ହୁଅ ନାହିଁ । ତୁମର ବୁଦ୍ଧି, ବିଦ୍ୟାର ଓ କାମ ପୋଖତ ହେଉ ।" ସେ ତ ପ୍ରତିଜ୍ଞାବଦ୍ଧ । ସେ ଲୋକଙ୍କର ଶ୍ରେଷ୍ଠ ପାଇଛନ୍ତି । ସ୍ୱାଧୀନ ନାଗରିକଙ୍କର ହୁକୁମ ସେ ପାଇଛନ୍ତି । ତେଣୁ ନଗ

ଚେଲଉଠିବେ କ ? ସହଜ ନୁହେଁ, ସମ୍ଭବ ବି ନୁହେଁ । ଗୁରୁ କିନ୍ତୁ ଛାଡ଼ିବେ କି ? ହାତର ମଣିବନ୍ଧକୁ ଜାବୁଡ଼ି ଧରି ସେ ଚିତ୍କାର କଲେ, "ଫେରିଆସ, ଶିକ୍ଷାର କାମ ସରି ନାହିଁ । ମଣିଷ ହେବା ବାକି ରହିଛି । ଦରଦୀ ହୃଦୟ ହୋଇ ନାହିଁ । ଯଦି ଶିକ୍ଷା ବିଫଳ ହୁଏ, ମୁଁ କାହିଁକି ଶିକ୍ଷା ସମ୍ମିଳନୀରେ ଯୋଗ ଦେବି ? ମୁଁ ବି ତୁମ ସଙ୍ଗରେ ଫେରିବି । ଆମେ ଫେରିବା, ଆମ କାମ ବାକି ପଡ଼ିଛି ।" ଏ ଏକ ଐତିହାସିକ ମିଳନ । କୁଳି ବି ମୁଗ୍ଧ । ଭାଷା ବୁଝୁ ନାହିଁ, କିନ୍ତୁ ମିଳନର ଭାବ ବୁଝିଛି । ଲେଉଟି ଆସି ସେ ପଇସା ମାଗୁ ନାହିଁ । ଚାହିଁଛି ଉଭୟଙ୍କ ଆଖିକୁ । ଜାଣୁଛି ଓ ବୁଝୁଛି, ସେମାନେ କଅଣ ଗୋଟାଏ ଛାଡ଼ି ଆସିଛନ୍ତି । ଅଭାବ ରହିଛି । "ଆପଣ ବୁହେଁ ପୁଣି ଆସିବେ, ଆଜି ଫେରନ୍ତୁ ।" କଡ଼ାଏ କଉଡ଼ି ଛାଡ଼ିବାର ଲୋକ ସେ ନୁହେଁ, କିନ୍ତୁ ସେ ବୁଝେ, ସେମାନେ ଏଥର ଯାଆନ୍ତୁ ପୁଣି ଆସିବେ ।

ପରମାନନ୍ଦ କଲେଜ ଅଧ୍ୟାପକ । ଏହି କାମରେ ବାଳ ପାଚିଲାଣି । ଆଜି ନୁହେଁ, ଜୀବନସାରା ସେ ମଣିଷ ଗଢ଼ୁଛନ୍ତି । ଭବିଷ୍ୟତ ଭାରତର ସେ କାରିଗର । ସେ ଶିଳ୍ପୀ । ସେ ଭାରତର ଭାଗ୍ୟ ନିର୍ମାଣ କରୁଛନ୍ତି । କେବଳ ସୁସଜ୍ଜିତ ଶ୍ରେଣୀରେ ନୁହେଁ, ସବୁଠି ତାଙ୍କର ଶିକ୍ଷା ହେଲା "ମଣିଷ ହେବା ।" ଗାଁକୁ ଗାଁ, ଘରକୁ ଘର ସେ ବାରବୁଲା । ଯେଉଁଠି ମଣିଷ, ସେଠି ମଣିଷ ହେବାର ଶିକ୍ଷା ।

ସେ କିନ୍ତୁ ଅସ୍ତବ୍ୟସ୍ତ । ତାଙ୍କ ଅଧ୍ୟାପନା କୋଠରୀ ଆଜି ଅସ୍ଥିର । କେଉଁଆଡ଼ୁ ପ୍ରବଳ ବାତ୍ୟା ଆସି ତାଙ୍କ ଅଙ୍ଗୁଳିକୁ ଉପାଡ଼ି ଫିଙ୍ଗି ଦେଇଛି । ସେ ବିବ୍ରତ । ପିଲାଏ ତାଙ୍କୁ ଭକ୍ତିରେ କହନ୍ତି, "ଆପଣଙ୍କ ଯୁଗ ଗଲାଣି । ଆପଣ ଆମ ସମସ୍ୟା ବୁଝିପାରୁ ନାହାନ୍ତି ।" ଏ କି ଯୁଗ ? ଅଧ୍ୟାପକ ପରମାନନ୍ଦ ବି ଦୃଷ୍ଟି ଫେରାଇ ନିଜ ପିଲାବେଳ କଥା ଦେଖନ୍ତି । ନାଁ, ନାଁ, ସେ କିପରି ହେବ ? ପୁରୁଣା ଦୃଷ୍ଟିରେ ନୂଆର ବିଚାର ସଙ୍ଗତ ନୁହେଁ । ଫେରନ୍ତି ଏଥର ଶିକ୍ଷା ଖଣ୍ଡେ ଚିରା କନ୍ଥା ପରି; ଗନ୍ଧିଆ, ଉପୁମୂଳିଆ ଓ ଓଦାଳିଆ । ତାଳପକା କନ୍ଥା ଟାଣିଲେ ପାଉ ନାହିଁ, ଫୁରୁ ଫୁରୁ ଚିରି ଯାଉଛି । ସେଥିରେ କଅଣ ଅଛି ? ଏ ଯୁଗର ମଣିଷ ଛିଆଁର କାହିଁ ? ଖଣ୍ଡେ ଜରାଜୀର୍ଣ୍ଣ ସିଲାଇ କଳ ପରି ଫଟ୍ ଫଟ୍ ବୁଲୁଛି । ସେଥିରେ ନିର୍ମାଣର

ଜଳା କାହିଁ ? ସ୍ରଷ୍ଟା କାହାନ୍ତି ? କେହି ତ ସୃଷ୍ଟିର ସ୍ୱପ୍ନରେ ବଦ୍ଧ୍ୱର ହେଉ ନାହାନ୍ତି । ଅଧ୍ୟାପକ ମହାଶୟ ଆଖି ତରାଟି ଦେଖୁଛନ୍ତି । ସାରା ବର୍ଷରେ ସେଇଆ । ବସ୍ତ୍ରବର ବନ୍ଧି ଆଜ ଯୁବଜଗତକୁ ଜାଳପୋଡ଼ ଦେଉଛି । ଅଧ୍ୟାପକଙ୍କ ଅଡ୍ଡୁଆ ଛୁଟୁ ନାହିଁ । ଚନ୍ଦ୍ରାର ଗଣ୍ଠି ଫିଟୁ ନାହିଁ । ଟାଣିଲୁ ବେଳକୁ ଗଣ୍ଠି ଟାଣ ହେଉଛି । ମନ ମଳିନ ଓ ମ୍ଲାନ ହେଉଛି । ଆଖିକୁ ଦଣଦଗ ଅନ୍ଧାର ହେଉଛି । ଏତିକିବେଳେ ହଠାତ୍ ଏକ ଘର୍ଘରାୟୁ ଯୁବକ, ଜ୍ୟୋତିପୁରୁଷ । "ମୁଁ ନଗ, ସାର୍ । ଆଜ ଆପଣଙ୍କ ଅଭିଳାଷ ପୂରଣ କରୁଛି । ଏମ. ଏ. ରେ ପ୍ରଥମ ଶ୍ରେଣୀ ପ୍ରଥମ ।" ବି. ଏ. ଫେଲ ନଗ, ଆଜ ଏମ୍. ଏ. ପ୍ରଥମ ଶ୍ରେଣୀ ପ୍ରଥମ । ଅଧ୍ୟାପକଙ୍କ ଅନ୍ଧାର ହଟିଗଲା । ତରୁଣ ନଗଙ୍କ ଅରୁଣ କାନ୍ତିରେ ଉଦ୍ଭାସିତ ଗୁରୁ କୁଣ୍ଢାଇ ପକାଇ ଆଶୀର୍ବାଦ କଲେ, "ଏବେ ରାଜନୀତି କର । ସେବା କର । ସମାଜର କାମ କର । ସେବା ନୈରାଶ୍ୟର ପ୍ରତିଦ୍ୱନ୍ଦ୍ୱୀ ନୁହେଁ । ଏକ ପରିପୂର୍ଣ୍ଣ ଜୀବନର ପ୍ରକାଶ ମାତ୍ର ।" "ହଁ, ହଁ, ମୁଁ ତିଆର । ଗାଁରେ ରହିବ, ଗାଁ କଥା ବୁଝିବ ।"

"ତୁମେ କହ ନଗ, ଗୁରୁ ସମାଜରେ ଆଜ ଅଶାନ୍ତ କାହିଁକି ?"

"ସାର୍, ଆପଣ ଜାଣନ୍ତି ନାହିଁ, ସମସ୍ତେ ଆପଣ ଭୟ କରନ୍ତି ଓ ଭକ୍ତି କରନ୍ତି ।"

—"ନାଁ, ନାଁ, ମୁଁ ଭୟ ଦୃଢ଼େ ନାହିଁ, ଭକ୍ତି ବି ନୁହେଁ । କଥାଟା କଅଣ ?"

"ଆପଣ ଆସନ୍ତୁ, ଏଇ ଦେଖନ୍ତୁ ।"

ଅଧ୍ୟାପକ ଆଗେଇଲେ । ଗୁରୁ ସିନା ବାଟ ଦେଖାନ୍ତି । ସେ ଯେ ଶିଷ୍ୟ ପଛରେ । ଭଲ କଥା । ଏ ଯେ ଭାରତୀୟ ଦର୍ଶନ । ସେ ସତ୍ୟର ସନ୍ଧାନରେ ଯାଇ ଦେଖନ୍ତି ମାଟିତଳର କାରବାର । ଗଛମୂଳରେ ଗୁମ୍ଫା । ସେଠି ସିଧାସଳଖ ରାସ୍ତା । କଟିକଟି ଅନ୍ଧାର । ଅନ୍ଧାର ମୂଳକରେ ଆଲୋକର ଆଶ୍ରମ । ଦଳେ ଯୁବକଙ୍କର ଧନବାଡ଼ି ଖେଳଘର । "ଆମେ ଏଣୁତେଣୁ ପାଶ୍ କଲୁ, କିନ୍ତୁ ଆମର ଆଗ୍ରହ, ଆମେ କଲେଜ କ୍ଲାସରେ ପାଠ ବୁଝିପାରିଲୁ ନାହିଁ । କରିବୁ କଅଣ ? ଆଲୋକାଶ୍ରମରେ ଆଡ୍ଡା

ହେଲୁ । ବଡ଼ ମଜା ଲାଗିଲା । ଆନନ୍ଦ ମିଳିଲା । କଲେଜର ଥକା ଏଇଠି ମେଣ୍ଟିଲା ।" ଏ ତ ଗଳ୍ପ ଗୋଟିଏ ଦଳର କଥା । ସେଠି ଯେ ବହୁଦଳର ସମାବେଶ । "ବାପା ଟଙ୍କା ଦିଅନ୍ତି । ଆମ କଥା ବୁଝେ କିଏ ? କଲେଜକୁ ଯିବା ଆମର ଆନନ୍ଦ । ସେଠି ନାମ ଥାଏ । ପ୍ରଗତି, ଗଣତନ୍ତ୍ର ଆଦି ଶବ୍ଦ ଆମକୁ ଖୁବ ଭଲ ଲାଗେ । ଆମେ ଏସବୁ ବୁଝୁ ନାହିଁ । ଆମେ ପଚ୍ଛୁଆରରେ ଯାଉଁ ୬ ପାର୍ଟି କରୁଁ ।" "ନାଁ, ନାଁ, ଆମର ଏକୋଇଶ ବର୍ଷ ହୋଇ ନାହିଁ । ଆମେ ମେ ଯାଏ ଅଟକିଛୁ । ନାମଟି ସିନା କଲେଜରେ; କିନ୍ତୁ କାମ ଆଲୋକାଶ୍ରମରେ ।" "ଆମେ ଗୁରୁବାର ଫେଲ ହେଲୁଣି । ଚାକିରି ତ ନାହିଁ, ଆମେ ରାଜନୀତି ଅଭ୍ୟାସ କରୁଛୁଁ ।"

ପରମାନନ୍ଦ ବାବୁ ଶୁଣୁ ଶୁଣୁ ଅବାକ୍ । ସେ ସ୍ଥିର ଗୁରୁ କିନ୍ତୁ ନଗ । କପାଳରେ କରମାରି ଗୁରୁଙ୍କ ଆଡ଼େ କାନ ଡେରିଥାନ୍ତି । ଦୁଇ ରାଜନୀତିର ଦଳ, ସଂଗ୍ରାମ-ସାଧକ ଓ ବିକାଶ ବିବର୍ଦ୍ଧକ । ଆଲୋକାଶ୍ରମର ଯୁବକଗଣ ଏମାନଙ୍କ ହାତବାରିସି । ସାମାନ୍ୟ ସ୍ୱାର୍ଥପାଇଁ ଏମାନେ ଏପାଖ ସେପାଖ ହୁଅନ୍ତି । ମୁଣ୍ଡ ଫଟାନ୍ତି । ଘରଦ୍ୱାର ପୋଡ଼ନ୍ତି । ସଭା ଭାଙ୍ଗନ୍ତି । ଟେକା-ପଥର ଫିଙ୍ଗନ୍ତି । ବାହାରେ ଏମାନେ ଦୁଇ ବିରୋଧ ଦଳର ସମର୍ଥକ; କିନ୍ତୁ ଆଶ୍ରମରେ ସେମାନେ ଏକ । ବାହାରେ ଫଟା; କିନ୍ତୁ ଭିତରେ ଗୋଟା । "ତୁମେ ସବୁ ରାଜନୀତିର ତଳ କିଆରି । ତୁମେ ଉଧେଇଲେ ଏ ଦେଶ ପଲ୍ଲବିବ ।" ଏ ପ୍ରକାର ସମର୍ଥନ ବେଳେ ବେଳେ ସେମାନଙ୍କୁ ଆନନ୍ଦ ଦିଏ ।

ରବିବାରର କଥା । ସନ୍ଧି ପାହିଲା । ଆଲୋକାଶ୍ରମରେ ଆଲୁଅ ଆସି ନାହିଁ । ଶିକ୍ଷାର ଆଲୋକ ନେଇ ପରମାନନ୍ଦ ପହଞ୍ଚିଲେ । ଆଶା ଅଛି, ବିଶ୍ୱାସ ଅଛି, ମନର ବଳ ବି ଅଛି । ପ୍ରେମର ଦୀକ୍ଷା ସେ କରି-ଛନ୍ତି । ସ୍ନେହର ରଜ୍ଜୁରେ ସେ ଆଲୋକାଶ୍ରମକୁ ବାନ୍ଧି ଦେବେ । ସେଦିନ ବିକାଶ ବିବର୍ଦ୍ଧକଙ୍କର ପ୍ରଚୁର ସଭା । ସେମାନଙ୍କଠାରୁ ବଇନା ମିଳିଛି । ସେମାନଙ୍କ ସଭାକୁ ପଣ୍ଡ କରିବାପାଇଁ ସଂଗ୍ରାମ ସାଧକଙ୍କଠାରୁ ବି ବଇନା ଆସିଛି । ଆଲୋକାଶ୍ରମର ବହୁରୂପ । ସେମାନେ ଡାହାଣୀ, ସେମାନେ ବି ଗୁଣିଆ । ସୃଷ୍ଟି ଓ ସଂହାର ସେମାନଙ୍କ କାମ । ସେଥିପାଇଁ ଅଧ୍ୟାପକ

ପରମାନନ୍ଦ ପହଞ୍ଚିବା ପୂର୍ବରୁ ଆଲୋକାଶ୍ରମରୁ ଦୁଇଦଳ ଯୁବକ ବାହାରି ଯାଇଥିଲେ । ବାହାରେ ଦୁଇ, ଭିତରେ କିନ୍ତୁ ଏକ । ପରମାନନ୍ଦ ଲାଗିଲେ ଶିକ୍ଷାର ଆଲୋକ ଦେବାରେ । ଆଲୋଚନା ଚାଲିଲା । ବିତର୍କ ହେଲା । ଜଣ ଜଣ କରି ବୁଝାବୁଝି ହେଲେ । ଆଶ୍ରମରେ ଶିକ୍ଷା ଶିବିର ଚାଲିଲା ।

ସନ୍ଧ୍ୟାର ସଭା ପଣ୍ଡ ହେଲା । ବିକାଶ ବିବର୍ତ୍ତିଙ୍କ ମୁଣ୍ଡ ଫାଟିଲା । ସଂଗ୍ରାମ-ସାଧକଙ୍କ ମୁଣ୍ଡ ବି ଫାଟିଲା । ପରମାନନ୍ଦ ଆଜି ପଦାର ଶତ୍ରୁ । ଚକ୍ର ତାଙ୍କ ବିରୁଦ୍ଧରେ ଚାଲିଲା । ଗୃହ ଲୁଣ୍ଠିତ ହେଲା । ସର୍ବସ୍ୱ ତାଙ୍କର ଅପହୃତ ହେଲା । ଘର ପାହାନ୍ତାକୁ ଅଗ୍ନି ଜଳିଲା । ସ୍ତ୍ରୀ ଓ ଏକମାତ୍ର ସନ୍ତାନ ପଳାଇ ଯାଇ ପଡ଼ୋଶୀ ଘରେ ପଶିଲେ । ଆଲୋକାଶ୍ରମର ଶିକ୍ଷକ ପରମାନନ୍ଦଙ୍କ ନାମରେ କୋର୍ଟରୁ ପରବାନା ଆସିଗଲା । ମୁଣ୍ଡ ଫଟା, ସଭା ଭଙ୍ଗ, ଲୁଣ୍ଠନ ଆଦି ସମାଜଦ୍ରୋହୀ କାମରେ ସେ ଅଭିଯୁକ୍ତ । ଏହି ଗୁରୁତର ଅଭିଯୋଗପାଇଁ ବନ୍ଦୀ ହୋଇ ବମ୍ପେ ଚାଲିଲେ । କଚେରୀରେ ହାଜର ହେବେ । ସମୟ ନାହିଁ, ଛୁଟି ନାହିଁ, ଛାଡ଼ ନାହିଁ ।

ପ୍ରଥମ ଶୁଣାଣି ପରେ ପରମାନନ୍ଦ ପୋଲିସ ବେଡ଼ାରେ ବେଷ୍ଟିତ ହୋଇ ଫେରୁଛନ୍ତି । ହାଜତରେ ରହିବେ । ଏକରକମ ଉଦାସୀନ ସେ । ଚିନ୍ତା କେବଳ ଆଲୋକାଶ୍ରମପାଇଁ । ରହିବା, ଖାଇବା, ଶୋଇବାରେ ମନ ନାହିଁ । ମକଦ୍ଦମା ତାଙ୍କୁ ବାଧୁ ନାହିଁ । ପାଦ ପଡ଼ୁଛି କି ନାହିଁ ତାଙ୍କୁ ଜଣା ନାହିଁ । ଚାଲି ତାଙ୍କୁ ମାଲୁମ ନାହିଁ । ଏତିକିବେଳେ କରୁଣାମୟୀ ନାରୀ ତାଙ୍କ ସମୀପରେ ଦଣ୍ଡାୟମାନ ହେଲେ । "ଆପଣଙ୍କ କଥା ବୁଝିଛି । ଆପଣଙ୍କ ଓକିଲ କିଏ ? ନଥିପତ୍ର କାହିଁ ?" ବିସ୍ମିତ ପରମାନନ୍ଦ ନୀରବ ରହିଲେ । ସେ ମହିଳା ପରମାନନ୍ଦଙ୍କ ହାତକୁ ଆସି ହାତରୁ ଖସିଲେ । ତାଙ୍କ ବଜ୍ରକଠିନ ହୃଦୟ ସାହାଯ୍ୟ ପାଇବାକୁ ଦୁର୍ବଳ ହେବା ମାନେ ସେ ନାରୀ ନାହାନ୍ତି ।

ତହିଁ ପରଦିନ ଜବାବସୁଆଲ ପଡ଼ିଲା । ହାକିମଙ୍କ କାଠଗଡ଼ାରେ ବୃଦ୍ଧ ଅଧ୍ୟାପକ ଠିଆ । କଚେରୀ ପ୍ରାଙ୍ଗଣରେ ଲୋକାରଣ୍ୟ ! ଛୁଞ୍ଚି ପକାଇବାକୁ ସ୍ଥାନ ନାହିଁ । ଟେବୁଲରେ ଠକ୍ ଠକ୍ କରି ହାକିମ ସମସ୍ତଙ୍କୁ ଚୁପ୍‌ଚାପ କରିଦେଲେ । ଶପଥ ପରେ ପ୍ରଶ୍ନ କରିବାକୁ ପଚାରିବାରୁ

ଅଧ୍ୟାପକଙ୍କ ଓକିଲ ହଠାତ୍ ଠିଆ ହେଲେ । ପଇସାପତ୍ର ନାହିଁ । ବ୍ୟବସ୍ଥା ନାହିଁ । ସେପରି ସ୍ଥଳରେ ଓକିଲ କେଉଁଠୁ ? ସେ ସ୍ୱ ଜବାବସୁଆଲ ଆରମ୍ଭ କରିଦେଲେ । ଅାଲୋକାଶ୍ରମ ଯେ ରାଜନୀତିର ଆଡ୍ଡା । ଏକଥା କେ ଜାଣିଲେ କିପରି ? "ଯୁବଶୋଣିତହିଁ ଦେଶର ବିଭବ, ଅତି କୋମଳ ମୃତ୍ତିକା ପରି । ପରମାନନ୍ଦ ଥିଲେ କୁମ୍ଭକାର ।" ଓକିଲଙ୍କ କୋମଳ ଓ କରୁଣ କଣ୍ଠରୁ ହାକିମ ଏହା ଶୁଣି ଦଣ୍ଡେ ଅଟକିଗଲେ । "ଆଲୋକାଶ୍ରମରେ ଜୀବନ ଗଢ଼ଣ କେବେହେଁ ଦେଶଦ୍ରୋହ ନୁହେଁ । ଜୀବନ ନିର୍ମାଣ ହିଁ ଜାତି ଗଠନର ମୂଳମନ୍ତ୍ର । ସେଠି ପରିସ୍ରବଣ ରାଜନୀତିର ସ୍ଥାନ ନାହିଁ ।" ପରମାନନ୍ଦ ଓକିଲ ମୁହଁକୁ ତରବରି ଚାହିଁଲେ । ସେହି କଲ୍ୟାଣମୟୀ ନାରୀ ମୂର୍ତ୍ତି, ଯିଏ ପୂର୍ବଦିନ ହଠାତ୍ ଦେଖାଦେଇ ଅନ୍ତର୍ହିତ ହୋଇଥିଲେ । ପରମାନନ୍ଦ କଅଣ ସ୍ୱପ୍ନ ଦେଖୁଛନ୍ତି ? ସେ ମୁକୁଳିଲେ ।

କଟେଜଘର ଲୋକଭିଡ଼ ଭିତରେ ପରମାନନ୍ଦଙ୍କ ଗୋଡ଼ ଚଳେ ପଡ଼ୁ ନାହିଁ । ଉପରେ ଉପରେ ସେ ଆସି ଫାଟକ ପାଖରେ । ଅତି ବ୍ୟାକୁଳଭାବରେ ସେ ଚାରିଆଡ଼େ ଚାହିଁଲେ । କାହାକୁ ଯେପରି ଖୋଜୁଛନ୍ତି—ସେଇ ରହସ୍ୟମୟୀ ନାରୀ···ତାଙ୍କ ଦେଖା ସେବା ପାଇବେ କେମିତି, ଏଇ ଲୋକାରଣ୍ୟ ଭିତରେ ? ହଠାତ୍ ତାଙ୍କ ସାମନାରେ ନଗ । ପାର୍ଲାମେଣ୍ଟ ସଭ୍ୟ ନଗ ଭାରତ ସରକାରଙ୍କ ନିମନ୍ତ୍ରଣ ନେଇ ଉପସ୍ଥିତ । "କୃତୀ ଶିକ୍ଷକଙ୍କୁ ଶିକ୍ଷାବୀର ଉପାଧିରେ ଭୂଷିତ କରାଯାଇଅଛି । ତାଙ୍କ ସମ୍ବର୍ଦ୍ଧନା ପାଇଁ ଆସିଛି ସଶ୍ରଦ୍ଧ ନିମନ୍ତ୍ରଣ ।" ପରମାନନ୍ଦଙ୍କର ମୁଣ୍ଡ ଗୋଳମାଳ । ଚାରିଆଡ଼ୁ ତାଙ୍କୁ ଅନ୍ଧକାର ଦେଖାଗଲା । ସବୁ ଯେପରି ଭୋଜବାଜି ଭଳି ଘଟୁଛି । ଏତେ ବିଦେଶାଗତ ବହୁ ନରନାରୀ ତାଙ୍କ ବାର୍ତ୍ତା ପାଇଁ ଉଦ୍‌ବିଗ୍ନ । ତାଙ୍କ ନୂତନ ପରୀକ୍ଷାର ଫଳ ଦେଶ-ବିଦେଶର ସମ୍ବାଦପତ୍ରରେ ଚମକ ସୃଷ୍ଟି କଲାଣି । ପରମାନନ୍ଦ ଥକି ପଡ଼ିଛନ୍ତି । ବିଜୟୀ ପରମାନନ୍ଦ କ୍ଳାନ୍ତ । ଦେହ ଥରୁଛି ! ମୁଣ୍ଡ ବିନ୍ଧୁଛି । ପଡ଼ିଯିବା ମାତ୍ରେ ପୁଣି ସେଇ ସେଇ ନାରୀ, ତାଙ୍କୁ ଟେକି ଧରିଲେ—ହସି କହିଲେ, ମୋର ଫିଜ୍ ମୋତେ ମିଳୁ ସାର୍ । ମୁଁ ଓକିଲ; କିନ୍ତୁ ଆପଣ ଯେଉଁସବୁ ଜୀବନ ରକ୍ଷା କରିଛନ୍ତି, ମୁଁ ସେଥିରେ ଜୀବନ ଲାଭ କରିଛି । ସେଇଥିରେହିଁ ମୋର ଫିଜ୍ ।" ନିର୍ବାକ୍ ନିଷ୍ପନ୍ଦଭାବରେ ପରମାନନ୍ଦ

ସେଇ ହାସ୍ୟମୟୀ ନାରୀଙ୍କ ମୁହଁକୁ ଚାହିଁଲେ । ସେ କିଛି କହିବା ଆଗରୁ ଭଦ୍ରମହିଳା କହିଲେ, "ଚାଲନ୍ତୁ ସାର୍······ଆପଣ ଅସୁସ୍ଥ, କ୍ଳାନ୍ତ—ସଂପୂର୍ଣ୍ଣ ବିଶ୍ରାମ ଦରକାର ।" ଅଧ୍ୟାପକ ଯେ ରୋଗଗ୍ରସ୍ତ । ସେ ଦିଲ୍ଲୀ ଯିବେ କିପରି ? ସେ ବାଣୀ ଦେବେ କିପରି ? ଆଲୋକାଶ୍ରମର ଶିକ୍ଷା ସଫଳ ହୋଇଛି । ସେଠାରେ ସମସ୍ତ ଯୁବକ ତାଙ୍କୁ ଚଲାଇ ଦେବେ ନାହିଁ । ଗାଡ଼ିରେ ଚଢ଼ିବେ ନାହିଁ । ଶହେ ମାଇଲର ପଥଶ୍ରମ ସେମାନେ ଭୁଲିଛନ୍ତି । ଗୁରୁଙ୍କୁ ସେମାନେ ହାତରେ ଟେକି ନେବେ ହାସପାତାଲକୁ ।

ଡାକ୍ତର ତିଆରି । ସାଜସରଞ୍ଜାମ ବି ଠିକ୍ । ବିରାଟ ସିଂହାନାଗୀ ହାସପାତାଳ । ଲୋକ ଭିଡ଼ି । ବିଶେଷ କରି ସାତଶହ ଦଳର ମୁଣ୍ଡଫଟା ସଂଗ୍ରାମ-ସାଧକ ଦଳର ଦୁଇଶହ ପଚାଶ ଜଣ ଗୋଟିଏ ପାଖରେ ଓ ଅନ୍ୟ ପାଖରେ ବିନାଶ-ବିବର୍ତ୍ତନ ଦଳର ଏକଶହ ସାତ ମୁଣ୍ଡଫଟା ରୋଗୀ । ଅଧ୍ୟାପକ ଆଖି ତରାଟି ଚାହିଁଲେ । ବାମ ପଟେ ବିକାଶବିବର୍ତ୍ତନ, ଡାହାଣ ପଟେ ସଂଗ୍ରାମ-ସାଧକ ଓ ପଛପଟେ ଆଲୋକାଶ୍ରମ । ତାଙ୍କପାଇଁ ସ୍ଥାନ କାହିଁ ?

* *

# ଏଇ ମାଟି ସେଇ ଘାଟି

"ଏ କଅଣ ଭ୍ରମ ନାଁ ମାୟା ? ପଣ୍ଡିତେ ବୁଝିପାରୁ ନାହାନ୍ତି । ବୁଢ଼ା ହେଲେଣି ସତ । ବୟସ ତାଙ୍କର ଷାଠିଏ । ମୁଣ୍ଡ ଗୋଟିକ ଧଳା; କିନ୍ତୁ ଦାନ୍ତ ଗୋଟିଏ ବି ପଡ଼ି ନାହିଁ । ଦିନକ ପାଇଁ ବି ତାଙ୍କର ଏ ଭ୍ରମ ହୋଇ ନାହିଁ । କାହିଁ କେଉଁ ଯୁଗର ସ୍ମୃତି । ଆଜି ତା'ର ପିଲାଛୁଆ, ନାତିନାତୁଣୀ ହେଲେ । କିନ୍ତୁ ପଣ୍ଡିତ ତାଙ୍କୁ ପାଶୋରି ନାହାନ୍ତି । ଦେଖିବାମାତ୍ରେ ନାଁ, ଗାଁ ସବୁ କହି ପକାନ୍ତି । କେତେ ଦୂରରୁ ଚିହ୍ନି ପକାନ୍ତି । କିଏ ଗଛରୁ ପଡ଼ି ଯାଇଥିଲା । କଣ୍ଟାଭୁକ ତା'ର ଗୋଡ଼ ଫୁଟିଥିଲା । ନାଁଟା ମନେ ପଡ଼ିବା ମାତ୍ରେ ସେ ଘାର ଦାଗ ତାଙ୍କୁ ଦେଖାଯାଏ । ସନାର ଶୀତଦିନେ ବଷବର କାଛୁ । ସନା ପୁଅକୁ ବି କାଛୁ । ଏବେ ସନାର ନାତି । କୋଳ ଛୁଆଟାକୁ ଶୀତଦିନେ କାଛୁ । ସନା ଆଜି ସନାତନ ଗାଁର ଥିଲାବାଲା ମଣିଷ । ସେ ଭୁଲିଲେଣି; କିନ୍ତୁ ପଣ୍ଡିତଙ୍କର ଏହି ତିନିପୁରୁଷ କଥା ମନେ ଅଛି । ତେବେ ତାଙ୍କର କଅଣ ଭ୍ରମ ହେଉଛି ?

ନାଁ, ନାଁ । ମାୟାଧର ମାୟାବୀ ପୁରୁଷ । ସେ କଅଣ ମାୟା କରୁଛନ୍ତି ? ଚକାଡୋଳା କଅଣ ପରୀକ୍ଷା କରୁଛନ୍ତି ? ଏଇ ବାଇଶି ପାବଚ୍ଛ ତଳେ ଜନ୍ମ ଜନ୍ମାନ୍ତରର ଦୋଷୀ ଦର୍ଶନ ପାଉଛି । ପାପୀତାପୀ ସମସ୍ତେ ଆଖି ପୂରାଇ ଦେଖୁଛନ୍ତି । ସେଇ ଗାଁର ବୁଢ଼ାବୁଢ଼ା ଦର୍ଶନ କରି ଫେରୁଛନ୍ତି । କୈବଲ୍ୟ ପାଉଛନ୍ତି । ତେବେ ପଣ୍ଡିତଙ୍କୁ ଏ ମାୟା କାହିଁକି ?

କେତେ ଦିନର ଆଶା । ଆଜି ମେଣ୍ଟିଛି । କିନ୍ତୁ ସେ ଯେ, ନିଷଣ ହେଉଛି । ସେ ଆଖି ଖୋଲି ଦେଖୁଛନ୍ତି । କାହିଁ ଚକାଡୋଳା ? କାହିଁ ବଳିଆର ଭୁଜ ? ପଣ୍ଡିତେ ତ ଶ୍ରୀମନ୍ଦିରରେ । ସେ କାଳିଆ ବଳିଆଙ୍କ ପାଖରେ । ଏକଥା ପଣ୍ଡିତେ ବୁଝୁଛନ୍ତି । କିନ୍ତୁ ଆଖି ଖୋଲିଖୋଲିଲି ନେଲଖୁ କଳାଡୋଳା ନାହିଁ । ଚତୁର୍ଦ୍ଧାମୂର୍ତ୍ତି ନାହିଁ । ପତିତପାବନ ନାହାନ୍ତି ।

ବୁଢ଼ା ପଣ୍ଡିତ ମନ ଦେଇଛନ୍ତି । ଚିତ୍ତ ସ୍ଥିର କରିଛନ୍ତି । ଭକ୍ତିରେ ଗଦ୍‌ଗଦ୍ ହୋଇଛନ୍ତି । ଆଖି ତରାଟି ଗୁହୁଁଛନ୍ତି । ହାତଯୋଡ଼ ଲଯ୍ଯ ଲଗାଇଛନ୍ତି । ଚକାଡୋଳାରେ ଶଢ ଶଢ କଳାଡୋଳା ସେ ଦେଖୁଛନ୍ତି । ଟେର ଆଖି ଡାଳୁରେ ଖୋଷା ହୋଇଛି । ମେଞ୍ଚା ମେଞ୍ଚା ପେଁଛଡ଼ା ବୋହୁଛି । ନାକରୁ ଶିଙ୍ଘାଣି ଗଡ଼ୁଛି । ଗଙ୍ଗା ଯମୁନାର ଧାର ପରି ନାକର ଦୁଇ ପୁଡ଼ାରୁ ଗ୍ଳୁଛି । କାହାର ବସ୍ତାନ କଏ ନେଇଗଲାଣି । ପାଟି ଆଁ କରି ଭେଁ ଭେଁ ହୋଇ ସେ କାନ୍ଦୁଛି । ଗଳାନାଳୀ ପର୍ଯ୍ୟନ୍ତ ପଣ୍ଡିତଙ୍କୁ ଦେଖାଯାଉଛି । ଜିଭରେ ମଇଳା ଓ ଦାନ୍ତ ହଳଦିଆ । ଚଗ୍ନ କନ । ବାଳ ଫରଫର ହୋଇ ଉଡ଼ୁଛି । ନାକର ବକଳା ଜମାଟ ହୋଇଛି । ମୁଣ୍ଡର ବେଣୀ ଓ ନାଲି ଫିତା ବନ୍ଧା ଯାଇଛି । ଗ୍ତ ପାହୁଛି । ସୂର୍ଯ୍ୟ ମା' କୋଳରୁ ଡେଇଁ ପଡ଼ିଲା ପରି ପିଲାଏ ଡେଇଁ ଡେଇଁ ମାଟିରେ କୁଦ ଆସୁଛନ୍ତି ଓ ପାଟି ଫିଟାଇ ଘର ଭିତରକୁ ମାଡ଼ି ଯାଉଛନ୍ତି । ପଣ୍ଡିତଙ୍କୁ ଘେରି ଯାଉଛନ୍ତି । ଗଛ ଚଢ଼ିଲା ପରି କାନ୍ଧ ଉପରକୁ ଉଠି ଯାଉଛନ୍ତି । ଏ କି ଦୃଶ୍ୟ ଜଗନ୍ନାଥ କଅଣ ଉଭେଇ ଗଲେ ? ସେ କଅଣ ଶ୍ରୀମନ୍ଦିରରେ ନାହାନ୍ତି ? ତେବେ ଏ ବିଡ଼ମ୍ବନା କାହିଁକି ?

ଏଥର ହେଲା ନାହିଁ । ବୁଢ଼ା ପଣ୍ଡିତେ ବାହୁଡ଼ିଲେ । ପୁଣି ଚେଷ୍ଟା କରିବେ । ମନ୍ଦିରର ବଡ଼ ସେବକ ତାଙ୍କର ଗ୍ରାହ । ଥରେ କଅଣ ପଚର ଥର ସେ ଆସି ପାରିବେ । ତାଙ୍କ ପାଇଁ ଦୁଆର ମେଲା । ଭିଡ଼ ତାଙ୍କୁ ବାଧୁ ନାହିଁ । ସେ ଆଖି ପୂରାଇ ଦେଖିବେ । ବହୁଦିନର ବାସନା ପୂରିବ । ଶ୍ରୀପାଦ ପଦ୍ମରେ ହାତ ଦେଇ ସେ ଶତ ଜନ୍ମର ପାପ ଧୋଇ ଦେବେ । ପୁଣି ସେ ଆସିଲେ । ଦିଅଁଙ୍କ ପାଖକୁ ସେ ଗଲେ । ଥଯ୍ଯ କରି ଏଥର ଗୁହିଁଲେ । ମନ ଲଗାଇ ଦେଲେ । ପୁଣି ସେଇ କଥା । ସେଇ ଅଡ଼ୁଆ । ସେଇ ପଖାଷା । ନୁଖୁରା ମୁଣ୍ଡ ଓ ଝାମ୍ପୁରି ମୁଣ୍ଡ । ଅଧସା ଦାନ୍ତର କଳକଳ ହସ । ଗୁଲୁଗୁଲୁ କଥା । ବାଟୁଳି ବାଜୁ ନାହିଁ । ଉପାସ ପେଟରେ ହସର ଡେଉ । ବକାର ନାହିଁ । ବଡ଼ିମା ନାହିଁ । ଭେଦ ନାହିଁ । ଚତୁପର ନାହିଁ । ବର ଓହଳରେ ଦୋଳି ଖେଳ । ସେପଟି ଉଡ଼ୁ, ବେଡ ବାଡ଼ ଛୁଡ଼ୁଛି । ପାଞ୍ଚଟା ଓହଳକୁ ଏକାଅଣୀ ପିଲା । ଛୁଉ ନାହିଁ । କେତେ କଳି, କେତେ ବ ଆନନ୍ଦ । କେତେ କାନ୍ଦଣା, ଚମୁଟା ଚମୁଟି କେତେ ବ

ସଙ୍ଗ:ସଙ୍ଗୀ, ଧରାଧରି ଓ କନ୍ଧ କନ୍ଧ । ପଣ୍ଡିତଙ୍କ କୋଳଖିଆ କୋଳ ଫଳଲାଣି । ସେଇଠି ସବୁ ଭିଡ଼ । ଫୋପଡ଼ ମାଡ଼ରେ କୋଳ ଝଡ଼ି ପଡ଼େ ସତ, ଦେହରେ ମାଡ଼ ବସିଲା ପରି ପଣ୍ଡିତଙ୍କୁ ଲାଗେ । ଆଙ୍କୁଶୀ ନଗା ନଗିରେ ଡାଳ ଝୁଲାଇ ଦେଉଛନ୍ତି । ପିଲାଏ କୋଳ ଖୁଣ୍ଟାରେ ଲାଗିଛନ୍ତି । ପିଲାଙ୍କ ପକେଟ ଭର୍ତ୍ତି । ଅଣ୍ଟି ପୂରୁଛି । ଅନେକଙ୍କ ପେଟ ଟଣ୍ଟିପାଏଁ ଭର୍ତ୍ତି ହୋଇଛି । ପଣ୍ଡିତଙ୍କ ମନ ଆନନ୍ଦରେ ପୂରୁଛି ।

ଆଙ୍କୁଶୀ କୋଳ-କଣ୍ଟାରେ ଲାଗିଛି । ପଣ୍ଡିତଙ୍କ ହାତ ନଗିରୁ ଛାଡ଼ୁନାହିଁ । ଆଖି ସେ ଆଡ଼େ ପଡ଼ୁଛି । ମୁଗ ଝୁଇଁ ମଉଳୁଛି । ମାଟି ଫାଟିଲାଣି । ଗେଣ୍ଡୁ ମୁଣ୍ଡ ପୋଡୁଛି । ହାତ ପାତୁଛି ପଣ୍ଡିତଙ୍କ ଆଡ଼କୁ । ତା'ର ବାକଲ ସହି ହେଉ ନାହିଁ । ସେ ଡାକୁଛି । ···ପଣ୍ଡିତଙ୍କ ଆଖି ଛଳଛଳ ହେଲା । ଆଉ ହେବ ନାହିଁ । ଜଗନ୍ନାଥ ଦେଖା ଦେବେ ନାହିଁ । ଏଥର ବ ଆସିବା ଭଣ୍ଡୁର ହେଲା । ପଣ୍ଡିତଙ୍କ ଆଶା ପଣ୍ଡ ହେଲା । ମନ ମରିଗଲା । ହୃଦ ଦବିଗଲା । ବାର ବର୍ଷର ତପସ୍ୟା ଜଳିଗଲା ପରି ଲାଗୁଛି । କାହାକୁ କହିବେ ? ସେ ଯେ ପଣ୍ଡିତେ । ସେ ମୁକଙ୍କୁ ବାଗ୍ମୀ କରନ୍ତି । ଆଖିରେ ଜ୍ଞାନଞ୍ଜନ ଲଗାଇ ଦଅନ୍ତି । ମଣିଷ ତିଆରି ତାଙ୍କ କାମ । ତେବେ କରୁଣା ଉଣା କାହିଁକି ? ଏ ବାଛବିଚାର କାହିଁକି ?

ସଞ୍ଜ ହେଲା, ଆଜି ଦେଖିବାର କଥା । ସମସ୍ତେ ସଜ ଓ ସମସ୍ତ ମଜଲ । କିନ୍ତୁ ପଣ୍ଡିତେ ନୁହନ୍ତି । ତାଙ୍କ ମନ ଦବ ଦବ ଯାଉଛି । ଅନନ୍ତଙ୍କୁ ଖୋଜ ଖୋଜ ସେ ଅନ୍ତ ପାଉନାହାନ୍ତି । ଦେହରେ ଉତ୍ତାପ । ଦେହ ପୋଡ଼ ଯାଉଛି । ମନପୋଡ଼ ସାଙ୍ଗକୁ ଦେହ ପୋଡ଼ । ସେ ବିଛଣାରେ ଢଳି ପଡ଼ିଲେ । ଗୁଇ ନଦ ଲାଗିଗଲା । ଅନେକ ଘଡ଼ଘଣ୍ଟା ନାହିଁ । ଶୁଭୁଛି ତାଙ୍କ ନନ୍ଦନରେ ସ୍କୁଲ ଘଣ୍ଟା । ସେ ଗୁହାରି ଛନ୍ତି ଗୁଳଣ ବର୍ଷ ତଳକୁ । ତାଙ୍କୁ ମୋଟେ କୋଡ଼ିଏ ବର୍ଷ । ଗଜା ପିଲା । ଜଣଦାଢ଼ୀ ଉଠି ନାହିଁ । ସେ କଅଣ ମାଷ୍ଟ୍ର ହେବେ ? ·ପିଲା କଅଣ ମାନିବେ ? କେତ କାହିଁ ? ଅବଧାନ କଅଣ ଏମିତ ସେମିତ ! ପାଠପଢ଼ା ଖଇରୁ ହେବ ଛତୁଫୁଟା କାଠ ପରି ଜଣ ଉଠା ପାଠ ଅସମ୍ଭବ । ଗଜା ମାଷ୍ଟ୍ରଙ୍କ ପାଠ ବ ସେଇଆ । ବାମ ଅବଧାନେ ଏ ଧକା ପାଇଲେ । ନାଁ, ନାଁ, ଛି, ଛି, ସେ

ସମ୍ଭାଳିଲେ । ହଉ, ଦି'ଦିନ ଦିନେ ଦେଖାଯାଉ । ହାତରେ ଦି'ଟଙ୍କ ଆଖି । ନସ ଛାଟି ଫିଟାଇ ଚାଟଶାଳୀରେ ପଶିଲେ, ପାଞ୍ଚୋଟି ପିଲା, ଦି'ଖଣ୍ଡ ଛିଣ୍ଡା ପାଲ, ଖଣ୍ଡେ ଭଙ୍ଗା ପଟା—ଏଇ ସମ୍ବଳ । ଏଠି ଫେର୍ ରସ ବନ୍ଧ ପଡ଼ିଲା । "ତୁମେ ଆମ ପାଇଁ କାଲି ଆଣିବ । ନାଲି ରସୁଆଳ ଆଖୁ । କିଷ୍ଟପୁ ଆସିବ ।" ପଚରା ଉତର ନାହିଁ । ଚିନ୍ତା ପଣତପୁ ନାହିଁ କାଲି ପାଇଁ ନିମନ୍ତ୍ରଣ, ଏଥିରେ ଅବଧାନ ହେବାର ଇଚ୍ଛା ରସେଇ ଗଲା । ମାଟି ବାଟଗଲା । ମଞ୍ଜିରୁ ଗଛ ହେଲା । ପିଲାଙ୍କ ମେଳରେ ମନ ମାନିଲା । ଆଖିଦିଆ ଅବଧାନଙ୍କ ପାଖକୁ ପିଲେ ଧାଇଁଲେ । ଭୂଆଷୁଣୀଙ୍କ ଠେଲାରେ ପିଲା ଉଠୁ ନ ଥିଲେ । ନିଦ ଭାଙ୍ଗୁ ନ ଥିଲା । ଅଳସ ଛାଡୁ ନ ଥିଲା । ଆଜି ମନକୁ ମନ ସଜ । ଶେଯ ଭଲ ଲାଗୁ ନାହିଁ । ଏ କାହାର କୁହୁକ ?

ଦିନ ଗଡ଼ୁଛି । ଗୁଳଣ ବର୍ଷ ଗୁଳିଯାଇଛି । କେତେ କଅଣ ବଦଳୁଛି । କେତେ ସନା ଗାଁର ସନାତନ ହୋଇଛନ୍ତି । କେତେ ଘନିଆ ଆଜି ଘନଶ୍ୟାମ । କେତେ ତକର ପଣ୍ଡିତଙ୍କ ହାତଗଢ଼ା ଚନ୍ଦ୍ରଧର । କେତେ ହୈଁସମୁକୁଶ ଆଜି କାରଜନମା । ଆଜି ପଣ୍ଡିତଙ୍କୁ ତାଡ଼ନା ନାହିଁ । ଡାକରା, ଭଡ଼ା ଓଟରା । ପିଲାଙ୍କ ଘେରଉରେ ସେ ବନ୍ଦୀ । ପଣ୍ଡିତଙ୍କୁ ବେଶ୍ ନିଦ ହୋଇଛି । ଥକା ମନ ତକା ନୟନ ଦେଖୁଛି । ଶୁଭୁଛି "ଏଇ ମାଟି ସେଇ ଛାଟି ।" "ସେଇ ଚୋର ଦିଅଁ ଦେବତା । ସେଠି ଶ୍ରୀମନ୍ଦିର । ସେଠି ଶ୍ରୀକ୍ଷେତ୍ର । ସେଠି ବିଜେ ଶିଶୁନାରାୟଣ ।"

* *

# ସୃଷ୍ଟି ଓ ସ୍ରଷ୍ଟା

"ବାବୁଙ୍କ କଥା ଛାଡ଼ । ତାଙ୍କ ମନ ମୋଟେ ଏଠି ନାହିଁ ।"

"ତେବେ ବାବୁଆଣୀଙ୍କର ?"

"ସିଏ ବି ସେଇଆ । ଝିଅଙ୍କ ଛୁଇ ପଡ଼ିଲେ ତାଙ୍କ ନାହି ତେଇଁଲା । ମାଇପି ଲୋକ ହେଲେ କଅଣ ହେବ, ସେ ଅଣ୍ଡିରାଙ୍କୁ ବଳିଗଲେ । ଜଣଙ୍କୁ ଜଣେ ବଳିଆର, ଦୁହିଁଙ୍କର ନାହିଁ ନ ଥିବା କଥା । ଝିଅ ପାଳିବାର ମନ୍ତ୍ରନସ୍ଥମ ଅଛି, ବେଳକାଳ ରହିଛି; କିନ୍ତୁ କଣ୍ଢେଇ ସଜାଇବା ଓ ଚଢ଼ ଘାଇଡିବା ମୋ ଦେଇ ହେଲା ନାହିଁ । ପେଟ ଶୃଖଣ୍ଡକ ପାଇଁ ହନ୍ତସନ୍ତ ହେଲ ।"

ଓଳି ତଳେ ବଳଟେ ବୋଲି ପିଣ୍ଡା । ସେଠି ପୁଣି କେତେ ଗଛ ପୋଇ ଗୁଳ ଉପରେ ଉଠି ଥାଲୁ ଥାଲୁ ପତ୍ର ଓ ପେନ୍ଥା ପେନ୍ଥା ଫୁଲ ଓ ମଞ୍ଜି । ଶାଶୁନଣନ୍ଦଙ୍କ ଅଭିଶାପରେ ପୋଇ ବସୁଘର ହାତ ଗୋଡ଼ ନାହିଁ । ଆଣ୍ଠୁକୁଡ଼ ସେ । କିନ୍ତୁ ସଂସାରରେ ମାୟା ଛାଡ଼ି ନ ପାରି ଗୁଳକୁ ଜାବୁଡ଼ି ଧରିଛି ପତ୍ର ଓ ମଞ୍ଜିର ଭରସରେ । ଠିକ୍ ପାଖଲୁ ସବୁ କୋଳି ଗଛଟି । କଣ୍ଟା ଯେତିକି ଫଳ ସେତିକି । ଗୋଟିଏ ମାତ୍ର ଡାଳ । ଝଙ୍କାଳିଆ ପତ୍ର ଛାଇରେ ଜଣେ ବି ବସି ପାରିବ ନାହିଁ । ଦୁଇଜଣ ମୁଣ୍ଡ ଛାଇକୁ ଦେଇ ଖରାକୁ ଗୋଡ଼ ଲମ୍ବାଇ କଥା ଗୁଳିଛି । ଚଇନ ମାଇସ୍ତ୍ରୀ ଲୋକ, ତେମି ପାଖରେ ଗୁଲୁ ଗୁଲୁ କଥାର ବାଟୁଳି ବାଜୁ ନାହିଁ ।

ଘରଟି ଭିତରେ କେତେ କଣ୍ଢେଇ ଓ ଚଢ଼ ରହିଛି । ବାବୁଙ୍କର ସଂସାର । ଦୁଇ ପ୍ରାଣୀଙ୍କର ପିଲପିଚିକା ନାହାନ୍ତି । ସେମାନେ ବି ଗୃହିଣୀ ନାହିଁ । ଚଇନର କାମ ଏଇ ସଂସାରକୁ ସାଇତିବା ଓ ବାବୁ ବାବୁଆଣୀ ମନଲାଖି ସଜାଇବା । ଝାଡ଼ୁଝାଡ଼ୁ କେତେ ଘଣ୍ଟା ଗୁଳିଯାଏ, ତଥାପି କେତେ ଶୋଧା ଖାଇବାକୁ ହୁଏ । ପ୍ଲାଷ୍ଟିକର ଗୋଲାପଫୁଲ, କାଗଜର

ନଡ଼ିଆଗଛ, ପଥରର ମଣିଷ, ମାଟିର ଜୀବଜନ୍ତୁ ଏମିତି କେତେ କେତେ କଥମର ସୁନ୍ଦରିଆ ଦୁନିଆର ! ମଛ ଜାମୁଡ଼ା ବିଡ଼ାଲଇ, ଚାପ ଶିକାରୀ ନେଉଳ, ମାଛରଙ୍କା ବଗ, ଭଲଭଲକ ମୂର୍ତ୍ତିରେ ମନ ଲାଖି ରହିବ । କଣ୍ଢେଇର ବାହାଘର ମିଛିମିଛିକା ନୁହେଁ, ସତେ କଅଣ ବରବାଉ ବେଦୀରୁ ବାହୁଡ଼ୁଛନ୍ତି । ଏମିତି କହି ଚାଲିଛି ଚଇନ । ଚେମିର ଶୁଣିବାକୁ ସେ ଅପେକ୍ଷା କରୁନ । ପାଣିର ସୁଅପରି ଚଇନର ଗୁଡ଼ାଏ ଉଚ୍ଛୁଳା ମନ-ଦିନକଥା ମନ କଥା ବହିଯାଇଛି । ସେସବୁ ମନମଜା ମଉଜ । ଚଇନ ନିଜକୁ ଭୁଲିଛି । ସତରେ ତା'ର ଦୋଷ ନାହିଁ । ସହରଟା ଯାକ ଏଇଥିରେ ମାତିଛନ୍ତି । ଛବି, ଚିତ୍ର, ମୂର୍ତ୍ତି ଓ ମେଡ଼ର କାରବାର ଚାଲିଛି । ଆଗ ଡାକ ଚଇନ । ସମସ୍ତଙ୍କ ସଂସାରର ସେ ଚାଳକ । ପ୍ରକୃତ ନ ହୋଇ ବିକୃତ ସଂସାରରେ ସମସ୍ତେ ମାତିଛନ୍ତି । ଚଇନ ଚେମିକୁ ବୁଝାଇବାରେ ଲାଗିଛି । ବାଡି ବଗିଚା କରିବ କିଏ ? ଜାଗା ନାହିଁ । ହାତରେ 'ମାଟି ଲାଗିବ ! ଦେହରୁ ଝାଳ ବହିବ । କେଉଁଦିନ ଗୃହାଁବାକୁ ପଡ଼ିବ ? ଏତେ କଥା କରୁଛି କିଏ ? ଗୋଲାପଫୁଲ ପ୍ଲାଷ୍ଟିକ ଡାଳରେ ଫୁଟି ରହିଛି କାଳକାଳକୁ । ପଇସା ଦେଲେ ଫୁଲ, ଫଳ ଡାଳର ଶୋଭା ଘରକୁ ମଗାଇ ହିଏ । ପିଲାଙ୍କ କଥା ଛାଡ଼, ଯେ କରିଛି ସେ ଜାଣେ । କେତେ ହଇରାଣ, ଘର ଅଶାନ୍ତି, କେତେ ଚିନ୍ତା ? ଜଙ୍ଘ ହେବା ସହିବ କିଏ ? ହେଁସ ହକାଳିବ କିଏ ! ପିଲାଙ୍କ ସଂଖ୍ୟା କମାଇବା କଥା କଅଣ କହୁଚ, ମୋଟେ ନ ହେଲେ ବି ଭଲ । ଚଇନର ବାବୁ ଓ ବାବୁଆଣୀ ଝଙ୍କରେ ପଶିବେ ନାହିଁ କି ଗୋଡ ଧୋଇବେ ନାହିଁ । ସବୁଥିରେ ବିଜ୍ଞାନ । ଜ୍ଞାନକୁ ସରକଢ଼ା କରି କଣ୍ଢେଇ ଜ୍ଞାନରେ ଦେହର ସେମାନେ । କଣ୍ଢେଇର ପୁଅ, କଣ୍ଢେଇର ଝିଅ । ଡଉଲଡାଉଲ, ବେଶ୍ ଭଲ, ଚିକ୍କଣ ଗାଲ । ବାବୁ ବାବୁଆଣୀଙ୍କର ସ୍ନେହ ଅକଳନ୍ତି । ଚେଲ, ହଳଦୀ ସାର ନାହିଁ, ସୁଅକୁ ନୁଖୁରା କର ନାହିଁ । ଅକ୍ଷରେ ଅକ୍ଷରେ ସତ୍ୟ ।

ଚଇନର କଥା ଚେମି ମନକୁ ପାଇଛି । ବର୍ଷେକର ପିଲାଟିର କଣ ମାତ୍ର ବର୍ଷର ସାତ ପିଲା । ଅଇଣ୍ଡିଆ ଛୁଆ ସାଙ୍ଗକୁ ଚେମିର ତମ ଧୁକୁଧୁକୁ ହୋଇଛି । ଚେମି ଓ ଚିନ୍ତା କରିଗଲେଣି । କି ପାପ ! ଜୀବନଟା

ହାୟ୍ ହାୟ୍ ! ହେଲେ କଅଣ ହେବ, ମା ଡାକ ମିଳିବ କେଉଁଠୁ ? ଉଖୁଡ଼ା ଖାଇବାର ଲୋଭରେ ବେଇବା କଷ୍ଟ ଭୁଲିଯିବାର କଥା ଅଛି । କିନ୍ତୁ ଚେମି ସବୁ କଷ୍ଟ ଭୁଲିଯାଏ କୋଳରେ ବସାଇ କଳେ ଦୁଧ ଖୁଆଇ ଦେଲେ । ଚଇନର କଥାରେ ଚେମିର ମନ ମାନୁଛି । କିନ୍ତୁ ହୃଦୟ କଳି ଲଗାଇଛି, ଶତଧିକାର ଦେଉଛି । ତୁଆ ଗୁଡ଼ଲେ ସେ ସଂସାରୀ ହେବ ହେବ କପଟ ? ମାୟା, ମମତା ଯିବ କୁଆଡ଼େ ?

ଚେମିର ମନ ଉଚ୍ଛନ୍ନ । ଚଇନର କଥା ସତ ନାହିଁ, କମର ଭିତ୍ତ ଚେମି ଛୁଟିଲ୍ ଚନ୍ଦ୍ରା ପାଖକୁ ।

"ଆମେ କେତେ କାଳ ଘାଣ୍ଟି ହେବା ? ଏ ବଜ୍ର କଠିନ ସ୍ୱର ଚନ୍ଦ୍ରାକୁ ଚମକାଇ ଦେଇଛୁ ।" ଏ କି ନୂଆ କଥା ? ଚେମି ପାଟିରୁ ପଦେ କଥା ବାହାରେ ନାହିଁ । ନାକଦଣ୍ଡିରେ ପ୍ରାଣ ଥାଏ । ବସ୍ତୁସ୍ୱର କଥା କହିବାର ଶକ୍ତି ନାହିଁ । ହେଲେ ସ୍ନେହସମ୍ବଳରେ ଚେମି ଚନ୍ଦ୍ରା ଜୀବନରେ ସ୍ୱର୍ଗସୁଖ ଭରିଦିଏ । ଏଇଥିପାଇଁ ଚନ୍ଦ୍ରା ଦୁଃଖ ଅଭାବକୁ ଖାତିର କରେ ନାହିଁ । କାମରୁ ଫେରିଲାବେଳେ ତା ଗାମୁଛାର ଚିଣ୍ଟିଗୁଡ଼ାକ ଫିଟାଇ ଦିଏ, ତୁଆମାନଙ୍କ ଆଗରେ । ତା ଭିତରେ କେତେ କଅଣ—ପିଲାଙ୍କ ନଡ଼ିଆ, ଦୋପାଗୀ ଉଖୁଡ଼ା, ଫେଣାଳ—ପ୍ରତ୍ୟେକଟି ପାଇଁ ଅଲଗା ଅଲଗା ଗଣ୍ଠି । ମୁଗବରଟିଏ ଚେମିପାଇଁ ଶାଳପତ୍ରରେ ଗୁଡ଼ା ହୋଇ ଅଲଗା ଗଣ୍ଠିରେ ଥାଏ । ସେତକ ଖାଇ ପାଣି ମୁନ୍ଦେ ପିଇଦେଲେ ଚେମିର ଭୋକ, ଶୋଷ ଓ ଭାଲେଣି ମରିଯାଏ । କିନ୍ତୁ ଆଜି ନିଷ୍ଠୁର ବାସ୍ତବତାର ରୂପରେ ସେ ବଲବଲ ଚାହିଁଛି । ଚେମି କହୁଛି, "ଆମେ ସୁଖରେ ରହିବା । ଘର ସଜାଇବା । ଛବି, ଚିତ୍ର ଟଙ୍ଗାଇବା । ଏତେ ଘାଣ୍ଟି ହେବା ନାହିଁ । ବେଳେବେଳେ ସିନେମା ଗଲେ ନାହିଁ । ମଜଜ କଲେ ନାହିଁ । କେତେ ସଢ଼ିବା ।"

ଚେମିର କଥା ଚନ୍ଦ୍ରା ଶୁଣିଗଲା । କଥାଗୁଡ଼ା ସେ ସେମିତି ଅ.ମ୍ରି ପିଇଗଲା । ଚେମି ତ କିଛି ଭୁଲ କହୁ ନାହିଁ । ......କେତେଦିନ, ସେ ବହେଁ ଏମିତି ଅଭାବ ଅନାଟନରେ ସେ ଘାଣ୍ଟି ହେଉଥିବ ।

କଏ ବାଉତ ପେଶିଲା କେଜାଣି......ତାର ବାଣ ଯେମିତ ଆସି ଚନ୍ଦ୍ରା ଦେହରେ ବାଜଗଲା......ଚନ୍ଦ୍ରା ଅସମ୍ଭାଳ—ଜାମାପଟା ଖୋଲ ନାହିଁ । ଗୋଡ଼ଧୋଇ ନାହିଁ । ଆଞ୍ଜୁଳେ ପାଣି ବି ମୁହଁରେ ନେଇ ନାହିଁ । ଶିଳ୍ପପୁରୀକୁ ସେ ଧାଇଁଲା । "ଆପଣା ଆପୁତ୍ର ପରକୁ ଦେଇ, ଶିବ ପଳାଇଲେ ଲଙ୍ଗଳା ହୋଇ ।"

ଚନ୍ଦ୍ରା ମନ ଆଜ ଅସମ୍ଭାଳ । ବାୟୁର ବେଗ ଜଣି ଧାଇଁଛି । କି ଉତ୍ତର ସେ ନେବ । ସେ ବି ଉତ୍ତର ପାଇ ନାହିଁ । ଶିଳ୍ପପୁରୀରେ କାମ କରି ତା'ର ଦଶ ବର୍ଷ ବିତିଗଲଣି । ମନ ତା'ର ଘାଣ୍ଟି ହୁଏ । ସେଥିରୁ କିଛି ବାହାରେ ନାହିଁ । ମନ ଛୁଟୁଛି, କିନ୍ତୁ ଗୋଡ଼ ପଛଉଛି । ଶରୀର ତା'ର ଦୁଇଖଣ୍ଡ ହୋଇଯାଇଛି । ମନଯାଇ ଶିଳ୍ପପୁରୀରେ ପ୍ରାଣ୍ଟିକ, କିନ୍ତୁ ଗୋଡ଼ ଆଗେଇ ନ ପାରି ପଡ଼ୁଛି । ଶରୀରର ଶ୍ରମ ତାକୁ ବାଧୁଛି । "ଏତେବେଳେ ଯିବ କପରି ? ଲୋକେ କହିବେ କଅଣ ?" ମନର ପ୍ରଶ୍ନ ମନରେ ମରୁଛି । ଆଜ ପୁଣି ସେ କଅଣ ପଚାରିବ ? ବାଧ ହୋଇ ଫେରିଲା । ସନ୍ଦେହ, ଶଙ୍କା କଅଣ ଛୁଆଙ୍କୁ ହଦଜେ ଛୁଉଁଛି ? ଭୋକ ବିକଳରେ ଆଠୁପାଠୁ ହୋଇ ଶୋଇ ପଡ଼ିଛନ୍ତି । ସବା ସାନଟି ବାମହାତ ବୁଢ଼ା ଆଙ୍ଗୁଠି ଚୁଚୁମି ଖଜୁରି ପଟିରେ ପଡ଼ିଛି । ପେଟର ଭୋକ ଚମ-ଚୁଇରେ ଲୁଚି ପାରି ନାହିଁ । ଅନ୍ୟ ଛୁଆ ଛଅଟି ଯେମିତ ଏପାଖ ସେପାଖ ହୋଇ ପଡ଼ିଛନ୍ତି । ଚନ୍ଦ୍ରା କାନ୍ଧ ପକାଇଲା । କୋହରେ କଁ କଁ ହେଲା । କିନ୍ତୁ ଛୁଆ ଉଠି ପଡ଼ିବେ । ତେମିର ନିଦ ଭାଙ୍ଗିଯିବ । ସେ କଅଣ ଖାଇବାକୁ ଦେବ ? ଭିତରର କୋହକୁ ପାଟିରେ ଲୁଗାବଣ୍ଡା ଦେଇ ସେ ବନ୍ଦ କଲା । ଏଇଥିପାଇଁ ସମ୍ଭବତଃ ମଣିଷ ବିକୃତ ହେଉଛି । ସେ ଅବାଟରେ ଯାଉଛି, ତା'ର ଆବେଗ ଅବାଟରେ ଫୁଟି ବାହାରୁଛି ।

ଆଜ ଯୁଗରେ ଚନ୍ଦ୍ରାଭଳି ଶହ ଶହ ଲୋକ ଏମିତ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି । ଗୋଟିଏ ଆଦର୍ଶଗତ ଦ୍ୱନ୍ଦ୍ୱର ସ୍ରୋତ ଚାଲିଛି । ପ୍ରକୃତ ଓ ବିକୃତ ମଧ୍ୟରେ ଚାଲିଛି ସଂଘର୍ଷ । ନୂଆପୁରୁଣାର ଯୁଦ୍ଧ । ମନ ଓ ହୃଦୟର ବିକଟାଳ ତାଣ୍ଡବଲୀଳା ।

ଗଛ ପାହିଲା କୁଆ କାଆ କରି ନାହିଁ । କାଳ ଅନ୍ଧାର ଢୋଟିଛି । ତଇନ ମେଞ୍ଚ ଚୂଡ଼ା ଚକଟା ଧରି ଧଇଁସଇଁ ହୋଇ ହାଜର । ଯା'ର

ସ୍ୱପ୍ନ ବିକୃତ ହୋଇଥିଲା । ସେ ପ୍ରକୃତ ହୋଇପଡ଼ୁଛି । କଣ୍ଢେଇ ଗୁଡ଼ି ଯେ ରେମିର ଝୁଆଙ୍କ ଚନ୍ଦାରେ ଶୋଇପାରି ନାହାଁନ୍ତି । ଚଇନର ପାଦ ପଡ଼ିବା ମାତ୍ରେ ଅଣ୍ଡାବସ୍ଥ ସବୁତେ ରେମି ଓ ଚନ୍ଦା ଉଠି ପଡ଼ୁଛନ୍ତି । ଝୁଆଙ୍କ ଛଟପଟ ସରିଲା । ଅଧଖା ପାଟିରେ ଚୂଡ଼ା ଗ୍ରାସ । "ଅନ୍ଧଚନ୍ଦା ଚମତ୍କାର" ନୁହେଁ କି ? ରେମିର ସନ୍ଦେହ ତୁଟି ନାହିଁ । ସେ ଚଇନଠୁଁ ଆଉରି ଶୁଣିବାକୁ ଚାହୁଁଛି ।

"ରେମି ଅପା, ମାଟିର ମୋହ ଆଉ ନାହିଁ । ମାଟି ମା'ର ଡାକ ଶୁଣୁଛି କପଟ ମଳମୁଣ୍ଡିଆ । ମାଟିରେ ଘାଣ୍ଟି ହେଉଛି ସେ । ଆମ ବାବୁ ସେଠୁ ଦୂରରେ । ମାଟିକୁ ଗୁଡ଼ ମାଟି କଣ୍ଢେଇରେ ପ୍ରୀତି । ଗୋଡ଼ ମାଟିରେ ଲାଗୁ ନାହିଁ । ସବୁବେଳେ ଯୋତା । ଶେଯ ପାଖରେ, ଗାଧୁଆ ଘରେ, ଖାଇ ବସିଲେ ମାଟିକୁ ଛି ଛି କରି । ମାଟିହାତ ଆଉ ନାହିଁ । ଶେଯ ପାଖରେ ପୋଖସ୍ୱପାଣି ଓ ଗାଧୁଆପାଧୁଆ । ବାବୁଙ୍କ କକେଇ ପାଦ ପକାଇଲେ ନାହିଁ । ଫୁଲଦାନୀରେ ଫୁଲ ନାହିଁ । କାଗଜ ଫୁଲ, ପ୍ଲାଷ୍ଟିକର ଫୁଲ କେତେ ବଢ଼ିଆ ପୁଣି । ସବୁବେଳେ ସତେଜ । ଏଇମ, ସେଥିରୁ କେଇଟା ମୋ ଗଭାରେ ।

"ଆମ ବାବୁଙ୍କ ଘରେ ରନ୍ଧାରନ୍ଧି ନାହିଁ । ନୂଆ ଯୋଜନାରେ ରୋଷାଇଶାଳ ରହିବ ନାହିଁ । ଆଚ୍ଛା କୁହ, ରାନ୍ଧିବ କାହିଁକି ଓ କେତେବେଳେ ? କିଏ ବା ରାନ୍ଧିବ ? ବାବୁ କାମରେ । ବାବୁଆଣୀ ବି ସେଇଥିରେ ବେଳ ନାହିଁ ? ହୋଟେଲରେ ଖାଇଲେ ଗଲା । ରନ୍ଧା ତିଅଣ କେତେ ରକମର ଟିଣରେ ମିଳୁଛି । ସାତଦିନ ପାଇଁ କେଉଁଠା ହେଲେ ଚଳିଯିବ । ପଡ଼ିଶାଘରେ ଝୁଆ ଜନମ ହେଲା । ମୁଁ ପୁଣି ଝୁଆକୁ ଆଦରିଲି । ଟିଣ ଭିତରେ ମା, ବୋତଲରେ ମା । ଏତେ କଥା କରୁଛି କିଏ ଏ ରେମି ନାନୀ, ତୁମ ଶୀଳକୁ, ହଳଦୀ କାଠୁଆ, କଜଳପାତିକୁ, ଚୂଳକୁ ବିଶ୍ରାମ ଦେ, ମ । କେତେ ବଟାବଟି କରିବୁ ? କେତେ ଫୁଙ୍କ ଫୁଙ୍କି କରିବୁ ? ଆମ ବାବୁଆଣୀଙ୍କ ଆଖିରୁ ଲୁହ ଜମା ଗଡ଼େ ନାହିଁ । କଜଳଗାର ଯେମିତି ସେମିତି ।" ଗ୍ରାମରାଜ୍ୟ ହେଲାମ ।

"ଏ ଝୁଆକୁ କଅଣ କରିବା ?"

"ଆଶ୍ରମ ହେଲଣି, ଜାଣୁନ ? ପଞ୍ଚବାର୍ଷିକ ଯୋଜନାର ନୂତନ ନିମନ୍ତ୍ରଣ କଥା ଏବେ ପଡ଼ୁଛି । ଏହାପରେ ପରିବାର ନିରୋଧ ହେବ । ତାପରେ ଯାଇ ଜଙ୍ଗଲକୁ ପଳେଇ ଯାଇ ଫଳମୂଳ ଖାଇବା ! ଏକାଥରେ ସବୁ କହିଦେଲେ ଲୋକେ ଡରିଯିବେ ।"

"ଆଚ୍ଛା, ମଣିଷ ତ ସ୍ନେହର ଜୀବ । ତା' ସ୍ନେହ ଯିବ କୁଆଡ଼େ ?"

"କଣ୍ଢେଇ, ଭଲ କଣ୍ଢେଇ । ମଲାମ, ବୁଝୁ ନାହିଁ, ଆଜି ଛୁଆଙ୍କୁ ବିଲେଇ, ବଣି, ବଗ, ବାଦୁଡ଼ି, ଭାଲୁଆ ଦେଖାଯାଉଛି କି ? ଅସଲ ପ୍ରାଣୀ ଗଲେଣି, ଏବେ ଖାଲି ଛବି, ଚିତ୍ର, କଣ୍ଢେଇ । ସରକାର ଦେଉଛନ୍ତି ପରା ? ଏବେ ଖାଲି ଛବି ବହି । ଏ ଅଙ୍କ ବହିରେ ବି ଚିତ୍ର । କେତେ କଅଣ ମ । ଲୋକେ କଅଣ ଆଉ ନାଟ ତାମସା, ପାଲା, ପଶାରେ ମନ ଦେଉଛନ୍ତି ? ସିନେମା ଏସବୁକୁ କାଟି ଦେଲା । ସେଠି ବି ଛବି । ସବୁ-ବେଳେ ସିନେମା ଦେଖିଲେ, ମଣିଷ ଅଛନ୍ତି, ଏ କଥା ଭାବି ହେଉନ । ବାବୁଙ୍କ ପାଖରେ ସବୁବେଳେ ହାତଧରା ରେଡ଼ିଓ—କାଯା ଛାୟା ପରି । କଏ ଗାଉଛି ? ମଣିଷ ଲୁଚିଗଲେଣି ।"

ଏପରି ଚାଲିଛି ଚଇତନ ଓ ଚେମିର କଥା । ଶୁଣି ଶୁଣି ଅସମ୍ଭାଳ ଚିନ୍ତା । ମୁଣ୍ଡ ବିଗିଡ଼ି ଯାଇଛି । ସେ ଚିତ୍କାର କରୁଛି, "ମୁଁ ନୁହେଁ, ଶିଳ୍ପପୁରୀ, ହିଁ, ହିଁ, ମୁଁ ପାଗଳ······ମୁଁ ।"

ଚିନ୍ତା ଏଯାଏଁ ଶିଳ୍ପପୁରୀ ଯାଇ ନାହିଁ । ଗୋଟିଏ ପାଖରେ କର୍ତ୍ତବ୍ୟର ତାଡ଼ନା ଓ ଅନ୍ୟ ପାଖରେ ଚେମିର ଚିନ୍ତା—ଉଭୟର ଦ୍ୱନ୍ଦ୍ୱରେ ସେ ଖଣ୍ଡି ହେଉଛି । ଦିନେ ଦୁଇଦିନ୍, ଦଶ ଦିନ, ଚେମିର ମମତାରେ ସେ ବାନ୍ଧି ହୋଇଛି । ସେ ଆଜି ଅସଲ ସଂସାରୀ । ଚଇତନର କଥା ତାକୁ ଭଲ ଲାଗୁଛି । ସେ କାନପାରି ଶୁଣୁଛି । ଇଚ୍ଛା ହେଉଛି, ସେ ମାୟାର ବନ୍ଧନ ଛିଣ୍ଡାଇ ପଳାଇଯିବ । ସେ ସଂସାରୀ ହେବ, କିନ୍ତୁ ସଂସାରୀଙ୍କ ସଙ୍ଗୀ ହେବ ନାହିଁ । ପୁଣି ଚେମିଗୋଳ—ମନରେ କୁହୁଡ଼ି ଘୋଟି ଯାଉଛି ।

ଦିନେ ଦିନ ପରେ ସେ ଆଜି ଶିଳ୍ପପୁରୀରେ । ଦେଖୁଛି ନୂଆ କଥା, ନୂଆ ଚିନ୍ତା ଓ ସୃଷ୍ଟିର ନୂତନ ଦିଗ । ଶିଳ୍ପପୁରୀ ଆଜି ସ୍ୱପ୍ନପୁରୀ ହୋଇଛି ।

ଲୋକ ଭିଡ଼, ସୋରଷ ପକାଇବାକୁ ଥାନ ନାହିଁ । ଖରା, ବର୍ଷା, ଶୀତ, ଦିନ, ସବୁବେଳେ ଲୋକଗହଳି । କାମଦାମ ନାହିଁ । ଉଦ୍ୟମ ନାହିଁ, ଉଦ୍‌ଯୋଗ ନାହିଁ । ସମସ୍ତେ ଚାହିଁ ବସିଛନ୍ତି—ଶିଳ୍ପପୁରୀର ନୂତନ ସୃଷ୍ଟିକୁ । ମାୟାମମତା ଉଭେଇ ଯାଇଛି । ପୁରୁଷ ଚାହିଁଛି ଶବ ପ୍ରତିମାକୁ ଓ ନାରୀ ଦେଖୁଛି ଶବପ୍ରତିମା ପୁରୁଷକୁ । ସ୍ୱାଭାବିକ ସ୍ନେହ ନାହିଁ, ଏକ କୃତ୍ରିମ ସମ୍ପର୍କରେ ଯନ୍ତ୍ରପରି ଚାଲୁଛି ସମାଜ । ଓଠରେ ହସ ଫୁଟୁ ନାହିଁ, ହୃଦୟରେ ସ୍ୱପ୍ନ ନାହିଁ, ଅଛି କେବଳ ଏକ ନିଷ୍ଠୁର ଯନ୍ତ୍ରର ଚାହାଣୀ, ବ୍ୟବସାୟର ସମ୍ପର୍କ ଓ ଯେସାକୁ ତେଷା ମନୋଭାବ । ସୁଦୂରର ଚିନ୍ତା ହୃଦୟକୁ ବ୍ୟଥିତ କରୁ ନାହିଁ ଓ ମନରେ ଆଲୋଡ଼ନ ଆଣୁ ନାହିଁ । ଖାଲି ଏଇ ଆଜର ସ୍ୱାର୍ଥରେ ସେ ଧନ୍ଦ ହେଉଛି ।

ଶିଳ୍ପପୁରୀରେ ହାହାକାର । ସ୍ରଷ୍ଟା ପାଗଳ । ଚିନ୍ତା କାହାଠାରୁ ଉତ୍ତର ପାଇବ ? ରେମୀ, ଗଗନ ଓ ଛୁଆଙ୍କ ଶଙ୍କା ଦୂର କରିବ କିଏ ? ସ୍ରଷ୍ଟା ଜ୍ଞାନଶୂନ୍ୟ ଓ ଚେତନାରହିତ । ସେ ଚିନ୍ତା ଆଡ଼କୁ ହାତ ପତାଇ ଅସ୍ପଷ୍ଟଭାବରେ ଚିତ୍କାର କରୁଛନ୍ତି, "ତୁମର ସୃଷ୍ଟି ବୃଥା, ମୋତେ ପ୍ରକୃତି କୋଳକୁ ନେଇଚାଲ । ମୁଁ ମନୁଷ୍ୟ ହେଉଛି । ସ୍ନେହ ମମତାର ମାନବିକ ସମ୍ପର୍କରେ ମୁଁ ମରିବାକୁ ଚାହେଁ । ସେଇଠି ମୋ ସୃଷ୍ଟି, ସ୍ଥିତି ଓ ବିଲୟ ।

* *

# ଶିଶୁ ଜୀବନର ମହତ୍ତ୍ୱ

ପୂଜା ବଜାର କଂପୁଛି । ସରଗରମ ହୋଇଛି । ଗଚନ ଘବନ ଉଠୁଛି ଉଡ଼ୁଛି । ସହର ବଜାର କଥା ଛାଡ଼ । ଗାଁ ଗହଳ ଆଉ ଥୟ ହୋଇ ନାହିଁ । ଦୋକାନ ବଜାର ମେଳଯାଇଛି । ଗାଁ ମୁଣ୍ଡ, ମଝି ଦ ଣ୍ଡ, ଗଳ କନ୍ଧ—ଯିଏ ଯେଉଁଠି ପାଉଛି, କଳସ ବସିଛି, ମେଢ ମାନୁଛି ଓ ସବୁ କଟୁ ଚଳ ବଚଳ ହୋଇଛି । ଘର ଲିପାଯାଉଛି । ଝିଅମାନେ ବଖୁ ବଖୁ ଝୋଟି, ଚିତା ଦେଉଛନ୍ତି । କାଞ୍ଚ ବା ପାଞ୍ଚ ହେଉ, ଝଙ୍ଗୀ ଖଣ୍ଡେ ଆସିଛି । ଘରେ ଯେତେ, ବାହାରେ ତହିଁ ସେତେ, ପିଠା, ପଣା, ଫେଣି, ନବାତ ମିଠାଇ କେତେ ବାଗବର୍ଗର ଓ ରଙ୍ଗରଙ୍ଗର ହାତୀ, ଘୋଡ଼ା, ଓଟ, ବବଡ଼ ଏପରି ରୂପର ଭଳକ ଭଳ ଭେଳକ କଟୁଛି । ତେଲ, ଚନ୍ଦ, ବେସନ, ସୁଜି, ଅଟା ଏସବୁର ଘାଉ ତେଜିଛି । ତେଜା ବଜାର ମାନ୍ଦା ହୋଇ ନାହିଁ । ଲୋକ ଭିଡ଼ରେ ପକେଟମାର ଗଣ୍ଠି କଟାଳୀର ଓ ଅଣ୍ଟି-କଟାଙ୍କ ଉଡ଼ ଆଦର ବେଶୀ । କିଏ ଦେଖେଇ ହସୁଛି । କିଏ ବି ମୁରୁକି ହସୁଛି । କାହାର କାହାର ଚପା ହସ ଲୁଚିଯାଇଛି । କାହାର ତେଲ ପସରା ଗଡ଼ିଯାଇଛି । କାହାର ବେଲ ବୋଝ ପଡ଼ିଯାଇଛି, ସମସ୍ତେ ହାୟ, ହାୟ । ଜଣାଜଣା ଲୋକଙ୍କ କାହାଣୀ ଶୁଭୁଛି, ଅଜଣା ଅଜଣା ଲୋକଙ୍କ କଷଣ ପଡ଼ୁଛି । ଫିତା, ଶବନ, ବାସନାତେଲ, ପାଉଡ଼ା, ଅଳତାରେ ବି ଭେଜାଲ ଭେଦଯାଇଛି । ସତେ କଅଣ ସ୍ୱାଙ୍କର ପସରାରେ ପଶିଯାଇଛି । ଯିଏ ଯେଉଁଠି ଦେଖୁଛି, ସେଠି ଅଛି । କିନ୍ତୁ ଦେଖିଲାବାଲା ପାଖରେ । ଏହା ମାତ୍ର ଏଇଠି । କେତେ ତରତର, ଫରଫର । ପୂଜା ସରିଯିବ । ଭିଡ଼ ଭାଡ଼ ଓ ଠେଲାଠେଲିରେ ଗୃହ ହେଉ ନାହିଁ । ଅକାଳେ ସକାଳେ ଗାଁ କଥା ମନେ ପଡ଼ୁଛି । ସହରର ମୋହ ମୁହଁକୁ ବାନ୍ଧ ଦେଇଛି । ଜାଲଛୁଣ୍ଡା ଲୋକ ବି ଅଛନ୍ତି । ସେମାନେ ଧପଡ଼ ଆସିଛନ୍ତି ଗାଁ ମାଟିକୁ । ମନଟା ଉଲ୍ଲାସ, ଗୁଣ୍ଡଟା ଛନଛନ, ବେପରୁଆ ହୋଇଛନ୍ତି । ପଇସା ବେଶୀ, ଏହା ସାଙ୍ଗକୁ ପଇସାରେ ଜିନଷ କମ୍ । ପଇସାରେ ଗଣ୍ଠୁଲି

ମୋଟ କରିବାକୁ ଗ୍ଲାଲଣି ସମସ୍ତଙ୍କର । ସହରରୁ ଗାଁକୁ ଆସିବେ । ହାଟରୁ ଘରକୁ ଫେରିବେ, ସମସ୍ତଙ୍କ ଚନ୍ତା, କାନ୍ଧରେ ବୋଝ, ହାତରେ ଗଣ୍ଠିଲି ଭରି ହେବ ।

ହରି ସାହୁ ଗ୍ଲାଲିଛୁ । ଛୁଏ ଥପ୍ପ କରୁ ନାହାନ୍ତି । ଛୁଆ ବୋଲି ଦୁଇଟା । ଆଉ ବେଶୀ ହୋଇଥିଲେ କଅଣ ହୁଅନ୍ତା ? ଏଇ ଦୁଇଟାଙ୍କୁ ସମ୍ଭାଳେ କିଏ ? ସେକାଳ ନାହିଁ । ଛୁଏ ସିନା ବେଶୀ ଥିଲେ । କିନ୍ତୁ ସେ ବେଳର ଏତେ ପ୍ରଲୋଭନ ନ ଥିଲା । କାଁ ଭାଁ କେଉଁ ମେଡ଼ ପାଖରେ କଳଗାଉନା ଖଣ୍ଡେ ବାଜୁଥିଲା । ଫୁଲ ପତ୍ରରେ ମେଡ଼ ସଜା ଯାଉଥିଲା । ମିଠାଇ, ମାଛି କଣ୍ଢେଇ ଏପରି ହଟା ଗୋଟେ ଦୋକାନ ବରଗଛ ମୂଳରେ ଥିଲା । କନା ଖଣ୍ଡେ ପାଡ଼ି ଦେଇ ଖେଳଣା ରଖାଯାଇଥିଲା । ଏବେ ଆଲୁଅରେ ଝଲମଲ । କି ସାଜସଜା । କେତେ ରକମର ମେଡ଼ । ରେକର୍ଡ଼ ଗୀତରେ ମନୁଷ୍ୟ ପାଟି ଶୁଭୁ ନାହିଁ । କାନ ଅତଡ଼ା ପଡ଼ି-ଯାଉଛି । ଦୋକାନ ଦେଖି ମତି ଭ୍ରମ ହେଉଛି । ଏ ଭେଳକିରେ ଛୁଆଙ୍କ ଚଞ୍ଚଳ ମନ ଚଗଲ ହୋଇଯାଇଛି । ହରି ସାହୁ ସରେ ରଖିପାରୁ ନାହାନ୍ତି । ପିଲେ ଅଥପ୍ପ । ଯିବେ ହାଟ ଦେଖି । ଶୁଆ ନାହିଁ, ବସା ନାହିଁ, ଖିଆ ନାହିଁ, ସଞ୍ଜ ହେବାକୁ ବାକି ଅଛି । ଝରକାରେ ଗରଗର ହୋଇ ସାହୁଏ ଦୁଆରରେ ଯବର ତାଲାଟେ ପକାଇ ବାହାରୁଛନ୍ତି । ପୂଜା ଘଡ଼ିରେ ଠାକୁରଙ୍କ ଠାକୁରଙ୍କର ଦାଉ ବେଶୀ । ତାଙ୍କୁ ଦୁଇ ଥର ଭଡ଼ ଠାକୁରଙ୍କୁ ସୁମରି ପାଖଆଖ ମେଡ଼ ଦୁ'ଟା ଗୋଟେ ଦେଖି ଛୁଆଙ୍କୁ ଭଣ୍ଡେଇ ଦେବାର ମନ । କେଉଁ ବାହାକୁ ‧ଦୁ'ଗୋଡ଼େ ଅଲଡ଼ା । ଘରେ ତ ଧନ ନାହିଁ । ପିଲେ କ'ଣ ବୁଝୁଛନ୍ତି ? ଛୁଆଙ୍କ ମା ସାନ ଛୁଆ ଲଭ କଲେ । ଗାମୁଛରେ ଭିଡ଼ ଦେଲେ ଭିଡ ବଜାରରେ ଭିଡ଼ ହେବା ଭଲ । ବାପା ବଡ଼ ଛୁଆଟିର ହାତକୁ ଧରି କଡ଼େଇ କଡ଼େଇ ପାଦ ପକାଇଲେ । ସାଇକଲବାଲା କାହାକୁ ମାନୁ ନାହାନ୍ତି । ରିକ୍ସାବାଲା ଠିଆରେ ଚଲାଇ-ଛନ୍ତି । କିଏ କାହାକୁ ଠେପିବ । ଏଇ ହେଲା ଧନ୍ଦା, ବଡ଼ ଛୁଆଟି ଗ୍ଲାଲିବ ନାହିଁ, ରିକ୍ସାରେ ବସିବ । ଚକଚକିଆ ଗାଡ଼ି, ଫୁଲଫୁଲିଆ ଘୋଡ଼ଣି, ଏହା ସାଙ୍ଗକୁ ପେ ପାଁ । ପୁଅର ଜିଦ୍‌ରେ ହରି ସାହୁ ରିକ୍ସା ଖୋଜିବାକୁ ବାଧ ହେଲେ । ରିକ୍ସାବାଲା ଶୁଣୁ ନାହାନ୍ତି । ପୂଜା ବଜାର ସରଗରମ ।

କଞ୍ଚା କଉଡ଼ି ପଖାଳ ଭାତ । ସାହୁଙ୍କୁ ଦେଖି ଭାତଡ଼େ । ସାହୁ ଦର କରିବେ, ଭଡ଼ା ଛୁଡ଼ାଇବେ । ଏଥିକୁ କିଏ କାନ ଡେରୁଛି ? ରାଗରେ ଜଳିଯାଇ ପୁଅକୁ ଚାପୁଡ଼ାଏ ଦେଲେ । ପୁଅ ରାହା ଧରି କାନ୍ଦିଲା । ରାସ୍ତାରେ ଗଡ଼ିଲା । ନୂଆ ପାଞ୍ଚ ଟିକକ ମଇଳା ହେବ । ଏଣୁ ମାଇଲେ ବ୍ରହ୍ମହତ୍ୟା ତେଣୁ ମାଇଲେ ଗୋହତ୍ୟା । ପୁଅର କାନ୍ଦଣା ଦେଖି ଝିଅ ବି ସଙ୍କେଇ ହେଲା । ହରି ସାହୁ କ'ଣ କରିବେ ? ହଠାତ୍ ପୁଅକୁ ଉଠାଇ ନେଇ କାନ୍ଧେଇଲେ । ଡାହାଣ ଗୋଡ ବାପା ପିଠିରେ ଓ ବାଁ ଗୋଡ ଛାତି ଉପରକୁ ଓହଳାଇ ପୁଅ ଦୁଇ ହାତରେ ବାପା ମୁଣ୍ଡକୁ ଧଇଲା । ବାପା ବି ବାଁ ଗୋଡ଼କୁ ଧରି ନାଚି ଉଠିଲେ । ପୁଅର କାନ୍ଦ ବନ୍ଦ ହେଲା ।

ଏପରି ଦୁଇପ୍ରାଣୀ ଚାଲିଲେ । ଭିଡ଼କୁ କାଟି ଆଗପଛ ହେଉଥାନ୍ତି । ସାହୁଙ୍କର ରାଗ ଚଢ଼ିଛି । ଆମେ କଅଣ ଦେଖିବା ? କଅଣ ଆଣିବା ? ଠାକୁର କିଏ କରିଛି । କିପରି ପୂଜା ହୁଏ ? କିଏ ମେଢ଼ ସଜାଇଛନ୍ତି ? କାହିଁକି ? ଏପରିକି ଅସରନ୍ତି ପ୍ରଶ୍ନ । ବାପ କାନ୍ଧରେ ପୁଅ । ଆକାଶ ଛୁଇଁବାକୁ ମାତ୍ର ଅଧ ଚାଖଣ୍ଡ ବାକି ରହିଛି । ପ୍ରଶ୍ନ ଝରି ପଡ଼ୁଛି । ମାତ୍ର ବାପା ନୀରବ । ଚିନ୍ତା ଧାରୁଛି । ପୁଅର ପ୍ରଶ୍ନ ମରିଯାଉଛି ।

ସବୁ ବୁଝାଇ ଦେବା ଦରକାର । ଠାକୁର ଦେଖା ଓ କଦଳୀବିକା ଏକ ସଙ୍ଗରେ ହେବା ଉଚିତ । ପିଲାଙ୍କୁ ବୁଲାଇ ନେଲାବେଳେ ସେମାନେ କ'ଣ ଦେଖୁଛନ୍ତି ସେ ବିଷୟରେ ଆଲୋଚନା କରାଯିବା ଦରକାର । ଆମେ ଅସୁର ହେବା ନାହିଁ । ଆମେ ନର, ଆମେ ମଧ୍ୟ ସୁର ହୋଇ ପାରିବା । ଏ କଥା ଠାକୁର ଦେଖାରୁ ପିଲେ ବୁଝିବେ ପିଲାଙ୍କ ପ୍ରଶ୍ନର ଉତ୍ତର ନ ଦେବା ଶିଶୁପାଳନରେ ଘୋର ଅନ୍ୟାୟ । ବରଂ ସେମାନେ ପ୍ରଶ୍ନ ପଚାରନ୍ତୁ । ଏଥିପାଇଁ ଉତ୍ସାହିତ କରିବା ପିତାମାତାଙ୍କର କର୍ତ୍ତବ୍ୟ । ସାଜସଜ୍ଜା, ଖେଳଣା, ଦୋକାନବଜାର ବଉଳ ବାଜା, ନାଟ ତାମସା, ମିଠାଇ ଏପରି ଯାହା କିଛି ପୂଜା ସହିତ ସମ୍ପୃକ୍ତ ସେସବୁ ପିଲେ ବୁଝିବେ । ଏସବୁ ପିଲାଙ୍କ ଭାଷାରେ ଓ ସେମାନଙ୍କ ଜ୍ଞାନର ସ୍ତର ଅନୁସାରେ କରାଯିବ । ଆଖି, କାନ ଆଦି ଇନ୍ଦ୍ରିୟ ସକ୍ରିୟ ହେବ । ମନ ମଧ୍ୟ ଚଞ୍ଚଳ ହେବ । ପିତାମାତା ଏ ଦିଗରେ ସାହାଯ୍ୟ କରିବେ ।

ପିଲଙ୍କୁ ପିଟିବା ଅନୁଚିତ । ଗାଳିଦେବା, ଶମୁଟିବା, ଚଟକଣା ମାରିବା, କାନ ମୋଡ଼ିବା, ବାଳଧରି ଘୋଷାଡ଼ିବା, ଧକା ମାରିବା ଇତ୍ୟାଦି ଆଚରଣ ଆଦୌ ଅନୁସରଣୀୟ ନୁହେଁ । ସବୁ ସ୍ଥଳରେ ବୁଝିବା ଓ ବୁଝାଇଦେବା ମନୋଭାବ ପୋଷଣ କରିବା ଉଚିତ । ବୟସ୍କ ଲୋକଙ୍କର କ୍ଷୁଦ୍ର ସଂସ୍କରଣ ହେଉଛନ୍ତି ସାନ ପିଲାମାନେ ଏପରି ମନେ କରିବା ଅନୁଚିତ । ସାନ ବୟସ ଜୀବନର ଏକ ନିର୍ଦ୍ଦିଷ୍ଟ ଅବସ୍ଥା । ଏହାର ସ୍ୱତନ୍ତ୍ର ଆବଶ୍ୟକତା ରହିଛି । ସମଗ୍ର ଜୀବନର ବିକାଶ ପାଇଁ ଶୈଶବର ନିର୍ଦ୍ଦିଷ୍ଟ ଦାନ ରହିଛି । ଅନ୍ୟାନ୍ୟ ଅବସ୍ଥା ପରି ଶୈଶବ ଏକ ସ୍ୱତନ୍ତ୍ର ଅବସ୍ଥା ।

ଶିଶୁ ଜୀବନ ଅତ୍ୟନ୍ତ ଅମୂଲ୍ୟ ! ସେ ଜାତିର ସମ୍ପଦ । "ଶିଶୁର ନାହିଁ ପରାପର, ସକଳ ଦେଖଇ ଈଶ୍ୱର ।" ଏପରିଭାବରେ ଅବଧୂତ ଶିଶୁଙ୍କୁ ଗୁରୁ କରିଥିବାର ବର୍ଣ୍ଣନା ଭାଗବତରେ ଅଛି । ସେ ଦୃଷ୍ଟିରେ ପିତାମାତା ଶିଶୁଙ୍କୁ ଦେଖନ୍ତୁ । ଏହାହିଁ ଆଜିର ଅନୁଚିନ୍ତା । ଯାନିଯାତ୍ରା, ପୂଜାପାର୍ବଣ, ନାଟତାମସା, କଳକୋଳାହଳ, ମଉଜମଜଲିସ । ମଣ୍ଡା, କାକରା—ଏହି ସବୁ ଭିତରେ ଏହାହିଁ ସ୍ମରଣୀୟ ।

* *

# ସୁନାପିଲା

ଆଖି ମଳ ମଳ ଶେଯରୁ ଉଠି ପଡ଼ନ୍ତି ଅନ୍ନପୂର୍ଣ୍ଣୀ । ଘର ପାହ୍ନ ନାହିଁ । ଘରଆଡ଼େ ଫର୍ଚା ହୋଇ ନାହିଁ । କୁଆ କାଉ କରି ନାହିଁ । କୁଆଁ ତାରା ଆକାଶକୁ ମାଡ଼ି ବସିଛି । ଏଣେତେଣେ କେଇଟା ତାରା ଚହଟି ଉଠୁଚି, ଠିକ୍ ବୈଶାଖ ମାସ ମଲ୍ଲିଗଛର ଫୁଲପରି । ଅନ୍ନପୂର୍ଣ୍ଣୀର ଆମ୍ବ କଥା ମନେ ନାହିଁ, ତାଳ ଗୋଟ ଇବାବେଳେ ସେ କେତେଥର ଏମିତି ଉଠି ଦେଉଛୁ । ମହୁଲ ଗୋଟାଇବାବେଳେ ତାଙ୍କୁ ଥରେ ଦ'ଥର ଏମିତି କଏ ଘରୁଙ୍କରୁ ଉଠାଇ ଦେଇଛି, ତାର ମନେ ନାହିଁ । ଫେରିପଡ଼ ଅନ୍ନପୂର୍ଣ୍ଣୀ ଦେଖେ ସେ ବାପା ଶେଯରେ । ମା' ବି ଗାଢ଼ ନିଦରେ । ତାଙ୍କୁ ନିଦ ହେଉ ନାହିଁ । ତା ଭିତରେ ଗୋଟେ ଛିନକା । ସେ ଘର ପାହାନ୍ତାରୁ ଉଠି ପଡ଼ିଲେ ସୁନାପିଲ ହେବ । ବାପା ଏହା କହୁଛନ୍ତି । ସେ କ'ଣ ସୁନାପିଲ ହେବେ ନାହିଁ ? ମା' ବି ବେଳେବେଳେ ଏହା କହନ୍ତି । ସେ ତ ଆଁ କରି ଅଚେତ । ସେ କଅଣ ସୁନାପିଲ ହୋଇ ସାରେଲେଣି ? ଥରେ ଦ'ଥର ବାପା ମା'ଙ୍କ କଥା ମାନି ଶେଯରୁ ସଅଳ-ଉଠିପଡ଼ିଲେ କଅଣ ସୁନ ପିଲ ହୋଇଯିବା ? ପିଣ୍ଡାରେ ବସି ଗୋଡ଼ ଲମ୍ବାଇ ଅନ୍ନପୂର୍ଣ୍ଣୀ ଏମିତି ଏମିତି ଭାବୁଛି ଓ ବେଳେବେଳେ ଢୋଳେଇ ପଡ଼ୁଛି ।

ନା ତା'ର ଅନ୍ନପୂର୍ଣ୍ଣୀ, କିନ୍ତୁ ଆଖି ଦ'ଟା ଡମା ଡମା । ସେ ସାନ-ପିଲ୍ । ବୟସ ତାର ଘରି ପୁରି ପାଞ୍ଚ ହେବ । କିନ୍ତୁ ସେ ଜାଣି ପାରୁଛି, ତା ପିଲାବେଳର ଛୋଟ ଛୋଟ ଫୁଲଗଛ ଆଜି ବଡ଼ ହୋଇଯାଇଛି । ବାପା ଯାହାକୁ ତା'ର ପିଲାବେଳର ସାନ ସାନ ମରିଚଗଛ କହୁଥିଲେ, ଆଜି ସେଥିରେ ଫୁଲ, ଫଳ ଧରିଛି । ଟିକି ମରିଚଟିଏ ପାଚିଯାଇଛି । ତା'ର ବି ହାତ ଲମ୍ବ ଲମ୍ବ ହୋଇଛୁ । ଗୋଡ଼ ଦ'ଟା ବଡ଼ ହୋଇ-ଯାଇଛି । ସେ ଡେଇଁ ପଡ଼ୁଛି । ସେ ଦୌଡ଼ ପାରୁଛି । ପିଣ୍ଡାରୁ ସେ ଥରେ ଡିଆଁ ମାରିଦେଲ୍ । ବାପା ଧାଇଁଆସି ଧରି ପକାଇଲେ । ଡେଇଁବାକୁ ବାପା ଦିଅନ୍ତି ନାହିଁ । ଥରେ ମା' ବସିଥାନ୍ତି । ମା' ଘରପିଠି ଦୌଡ଼ ଦୌଡ଼

ଅନ୍ନପୂର୍ଣ୍ଣୀ ଖେଳୁଥାଏ । ଥରେ ଥରେ ମା'କୁ ଛୁଇଁ ପଳାଇଯାଏ ଓ ପୁଣି ମା' ପାଖକୁ ଧାଇଁ ଆସେ । ବାପା ମା'ଙ୍କର ଗୋଟିଏ ବୋଲି ପିଲା । ମାତ୍ର ଝିଅଟିଏ । ଏହା ପୂର୍ବରୁ ଦୁଇଟି ଝିଅଙ୍କୁ ଯିଏ ଦେଇଥିଲେ ସେ ନେଇ-ଯାଇଛନ୍ତି । କୋଡ଼ରେ ଧରିବାକୁ ମାତ୍ର ଏଇଟି । ସେ ପୁଣି ପରଘରେ ହାଣ୍ଡି ଧୋଇ ଖାଇବ । ତା'ର ଏ ଧାଁଧପଡ଼ କଅଣ ହେବ ? ବାପାମା'ଙ୍କ ଘୃଣ୍ଣ ଥିର ଉପରେ । ବାପଦର ସବୁ ଏକାବେଳେକେ ଗିଳ ପକାଏ । ଅନ୍ନପୂର୍ଣ୍ଣୀ ଆଖିର ପିତୁଳା । ସେ ସ୍ନେହରେ ବଢ଼ିଛି । ସେ ଭୂଜା ଖାଏ । କାଖ ହୁଏ । ତାକୁ ଖୁଆଇ ଦିଆଯାଏ । ଲେଙ୍ଗୁଟି ପିନ୍ଧାଇ ଦିଆଯାଏ । ମୁଣ୍ଡ କୁଣ୍ଡାଇ ଦିଆଯାଏ । ତା'ର ମନ ହୁଏ, ଏସବୁ କରିବାକୁ, ହାତରେ ପାନିଆ ଧରି ସେ ମୁଣ୍ଡ କୁଣ୍ଡାଇବ । ସେ ହାତରେ ଗୁଣ୍ଡା ଚକଟିବ । ସେଥିରେ ତେନ୍ତୁଳି-ପାଣି ମିଶାଇ ଚଣ୍ଡିରେ ଗୁଡ଼ଦେବ । ଏ ମଜଜ ସେ କରିବ । ଅଣ୍ଟା ତଡ଼ାରେ କବାଟ ଲଗାଇ ସେ ଓଢ଼ଣା ଦେବ । ସେ ମା'ପରି ବୋହୂ ସାଜିବ । ତାକୁ ସାଙ୍ଗ ପିଲା ଅନାଇଦେଲେ ସେ ମୁହଁକୁ ମୋଡ଼ଦେବ । ମନର ଏସବୁ ଭାବନା ଚୂନା ହୋଇଯାଇଛି । ମା'କୁ ମେଢ଼ିକରି ସେ ଦୌଡ଼ ଆସନ୍ତା । ତା'ର ଡରଭୟ ରହନ୍ତା ନାହିଁ । ଘରକାଟି ଖପେଲାଖେ ପକାଇ ଏକଗୋଡ଼ିଆ ଖେଳ ଖେଳନ୍ତା । କିନ୍ତୁ ସେ ମା'ଙ୍କର କୁନିପିଲା । ସେ ବସି ରହୁ । ହଳଦି ପାଣିରେ ସେ ହାତ ନ ଦେଉ, ସେ ପୁଣି ତା'ର କମ୍ବା ହାତକୁ କରିବ କଅଣ ? ମା' ବେସର ବାଟିବାବେଳେ ଅନ୍ନପୂର୍ଣ୍ଣୀର ହାତ ମା' ମୁଣ୍ଡକୁ ପାଉ ନ ଥିଲା । ଆଜି ମା' ମୁଣ୍ଡକୁ ଟପିଛି । ଗଛରୁ ପତ୍ର ସେ ଆଣୁଛି । ପେଣ୍ଡାରୁ ତଆସିଲି ସେ ନେଇ ଆସୁଛି । ତା ର ଇଚ୍ଛା ସେ ତଆସିଲି ମାରି ନିଆଁ ଜାଳିବ । ପାର୍ ହେଲେ ତାକୁ ମଜା ଲାଗିବ । କିନ୍ତୁ ମା'ର ଭୟ, ତା'ର ଆଙ୍ଗୁଳି ଜଳିଯିବ । ଚକରେ ମା' ଦାଳିଚୂନା କରନ୍ତି । ବରି ବଟୁଡ଼ ପକଡ଼ ଓ ଚକି ଚକାଭଉଁରି କରେ । ଅନ୍ନପୂର୍ଣ୍ଣୀ ଏହାକୁ ଦେଖୁ ଦେଖୁ ମା' ହାତ ଉପରେ ହାତ ପକାଇ ଦିଏ । କିନ୍ତୁ ମା' ଭୟରେ ଗ୍ରହନାଆ, ଅନ୍ନପୂର୍ଣ୍ଣୀର ହାତ ଖାଇଯିବ । ସେ କଅଣ ସେପରି ପିଲା ହେଲାଣି ? "ଆମେ ତ ଶିଳରେ ବାଟୁଛୁଁ, ଚକରେ ଚୂନା କରୁଛୁଁ, ପନିକରେ କାଟୁଛୁଁ । ଆମକୁ ଶିଖାଇଥିଲା କିଏ ? ଆମେ କଲେ, ଅନ୍ନପୂର୍ଣ୍ଣୀ ବେଳକାଳରେ ତା କାମ କରିଯିବ ।" ସେ ଦେଖୁ ଓ ଆମ ସଙ୍ଗରେ କରୁ । ଆମେ ବୁଝାଇ ଦେବା । ସେ ସାବଧାନ ହେବ । ସେ କଅଣ ସୁନା କି ?

ଆମେ ତାକୁ ସିନ୍ଧୁକରେ ସାଇତି ରଖିବା । ଆଖି, ନାକ, ହାତ, ଗୋଡ଼ ଆହ୍ଵ ବଢ଼ୁଛି । ଏହା ଫଳରେ ସେ ନୂଆ ନୂଆ କାମ କରିବ । ଅଳ୍ପଣୀ ପ୍ରଜାପତିକୁ ଅନାଉଛି । ଦୁଇଟା ସାରୁପତ୍ର ଦ ହାତରେ ଧରି ଜଙ୍କକୁ କାବୁ କରୁଛି । ଜଙ୍କ ଗୋଡ଼ରେ ସୂତା ବାନ୍ଧି ଛାଡ଼ ଦେଉଛି । ବେଳେ-ବେଳେ ଜଙ୍କର ଡେଣା ଛିଡ଼ିଗଲେ ତା' ମନରେ ଦୁଃଖ ହୁଏ । ଏଇଟା ଭଲ କଥା । କିନ୍ତୁ ଅଳ୍ପଣୀର ହାତ, ଆଖି ଓ ଗୋଡ଼ ବେଶ୍ ଏକ ସାଙ୍ଗରେ କାମ କରୁଛି । ଏଥିରେ ବାଧା ଦେଲେ ସେ ସୁନାପିଲ ହେବ କପରି ? ଆମ ମନରୁ ଭୟ ଦୂର କରିବାକୁ ହେବ । ବଢ଼ିଲା ହାତରେ ବଡ଼ କାମ କରିବା ପାଇଁ ଅଳ୍ପଣୀର ଭିତରୁ ଇଚ୍ଛା ମନକୁ ମନ ହେଉଛି । ଏହି ଇଚ୍ଛାକୁ ସୁଯୋଗ ଦିଆଯିବ । ଦାନ୍ତୁଡ଼ା ପଳକରେ ସେ ଭେଣ୍ଡି କାଟୁ । ଶିଳରେ ଇଟା ଗୁଣ୍ଡକରି ମେ ମୁରୁଜ ଦେଉ । ସେ ପିଜୁଳି ତୋଳୁ । ହାତ ନ ପାଇଲେ ଆମେ ଟେକି ଦେବା । ନୋହିଲେ ଗଛମୂଳରେ ପାଛିଆ ଓଲଟାଇ ତା ଉପରେ ଠିଆ ହୋଇ ପିଜୁଳି ଛିଡ଼ାଇ ଆଣିବ ।

ଆଖି ଥାଉଁ ଥାଉଁ ଆମେ ପିଲାଙ୍କୁ ଅନ୍ଧ କରିଦେଉଛୁ । ବାଛି ବାଛି ଅଳ୍ପଣୀ ନା ଦେଇଛୁ । ନାମ ଅନୁସାରେ କାମ ଓ ଭୟରେ ଘୃଣିଆ ହୋଇ ନାମ ଦେଇଛୁ । ଅଶ୍ଳୀଳ ଶବ୍ଦ କାନ୍ଥରେ ଟାଙ୍ଗିଛୁ ଓ ଆମେ ଭାବୁଛୁ, ପିଲାଟା କଅଣ ଦେଖିବ ? ଅସନାକୁ ସେ କଅଣ ଦେଖିପାରିବ ? ପଚା ଦୁର୍ଗନ୍ଧକୁ ସେ କଅଣ ବାରିପାରିବ ? ଅଶ୍ଳୀଳ କଥା ଆମେ କହୁଛୁଁ, ସେ କଅଣ ଶୁଣି ପାରିବ ? ନ କହିବା କଥାକୁ ଆମେ ପିଲାର ଅଜଣା ଭାଷାରେ କହୁଛୁଁ ଓ ଆମେ ମନେ ମନେ ଭାବୁଛୁଁ, ସେ କଅଣ ବୁଝି-ପାରିବ ? ଆଖି ନାହିଁ, ପିଲେ ଏହା କହି ଅଣ୍ଡାଳ ଅଣ୍ଡାଳ ଖେଳନ୍ତି । ସତରେ ଆମେ ସେଇଆ ଭାବୁଛୁ । "ପିଲାଙ୍କର ଆଖି ନାହିଁ, କାନ ନାହିଁ, ଆମେ ଯାହା କଲେ ଦୋଷ ନାହିଁ ।" ଏହି ଭାବନା ଠିକ୍ ନୁହେଁ । ଆମର ଘୋର ଦାୟିତ୍ଵ ରହିଛି । ସନ୍ତାନଟିଏ ଆଶା କରିବା ମାତ୍ରେ ବା ସନ୍ତାନଟି ମାତୃଗର୍ଭସ୍ଥ ହେବାକ୍ଷଣି ପିତାମାତା ନିଜର କଥା, କାମ ଓ ବ୍ୟବହାରକୁ ସଂଯତ କରିବା ଉଚିତ । ଆମ ପରମ୍ପରାରେ ଏହା ରହିଛି । ସନ୍ତାନ ପ୍ରସବା ଜନନୀକୁ ସଦ୍‌ଗ୍ରନ୍ଥ ପାଠ କରିବାକୁ ଦିଆଯାଏ । ସାତ୍ତ୍ଵିକ ସୁଖାଦ୍ୟ ଦିଆଯାଏ । ଧର୍ମପରାୟଣା ହେବାକୁ କୁହାଯାଏ । ପିତାମାତାଙ୍କ ପ୍ରଭାବ

ଶିଶୁ ଜୀବନକୁ ପ୍ରଭାବିତ କରିଥାଏ । ବାଲ୍ୟଜୀବନର ନୀତିଶିକ୍ଷାରେ ଏହାହିଁ ମୂଳମନ୍ତ୍ର ଅଟେ ।

କଥାରେ କହନ୍ତି, ଅନ୍ଧ୍ର ପ୍ରଦେଶର ପିଲାଟିଏ ଖୁବ୍ ମିଠା ପ୍ରିୟ । ସେ ଦିନସାରା ଚିନି, ଗୁଡ଼, ମିଠେଇ ଆଦି ଖାଏ । ମିଠାଇ ଖାଇବା ଏତେ ବଢ଼ିଗଲା ଯେ ସେ ପିଲାଟି ନାନା ରୋଗରେ ପଡ଼ିଲା । ନାନା ପ୍ରକାର ଚିକିତ୍ସା କରିବା ସତ୍ତ୍ୱେ ସେ ପିଲାଟି ଭଲ ହେଲା ନାହିଁ । ଯେଉଁ ପିଲାର ପିତାମାତା ଚିନ୍ତିତ ହୋଇ ପଡ଼ିଲେ । ଶେଷରେ ସେମାନେ ଜଣେ ମହାତ୍ମାଙ୍କ ପାଖକୁ ନେଇଗଲେ । ସବୁକଥା ଶୁଣିସାରି ସେହି ମହାତ୍ମା ପନ୍ଦର ଦିନପରେ ସେହି ପିଲାକୁ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ଠିକ୍ ଯେଉଁଦିନ ପନ୍ଦର ଦିନ ପୂରିଲା, ସେଦିନ ସେହିପିଲା ସହିତ ପିତାମାତା ଉପସ୍ଥିତ ହେଲେ । ଏଥରକ ମଧ୍ୟ ଆଉ ସପ୍ତାହକ ପରେ ଆସିବା ପାଇଁ ନିର୍ଦ୍ଦେଶ ଦେଲେ । ଏହାକୁ ମାନି ପିତାମାତା ସପ୍ତାହକ ପରେ ପୁଣି ମହାତ୍ମାଙ୍କ ପାଖରେ ପହଞ୍ଚିଗଲେ । ମହାତ୍ମା କିଛି କହିବା ପୂର୍ବରୁ ବ୍ୟଥିତ ପିତାମାତା ପ୍ରଶ୍ନ କଲେ, ଆପଣ ଆମକୁ ଏପରି ଦଉଡ଼ାଉଛନ୍ତି କାହିଁକି ?" ଉତ୍ତରରେ ମହାତ୍ମା କହିଲେ, ମୁଁ ମଧ୍ୟ ମିଠାପ୍ରିୟ ଥିଲି । ନିଜେ ମିଠା ନଛାଡ଼ିବାଯାଏଁ ଶିଶୁଟିକୁ କି ପରାମର୍ଶ ଦେବି ?" ବସ୍ତୁତ ଆଦର୍ଶର ଜୀବନ ନ ହେଲେ ସେହି ଆଦର୍ଶରେ ଅନ୍ୟମାନଙ୍କୁ ପ୍ରେରଣା ଦେଇ ପାରିବା ନାହିଁ । ଜୀବନରେ ଆଦର୍ଶ ବ୍ୟକ୍ତିର ଉପଦେଶ ଫମ୍ପା ହୋଇଯାଏ ଏହା ମୂଲ୍ୟହୀନ । ଶାନ୍ତି, ମୈତ୍ରୀ, ସ୍ନେହ, ପ୍ରେମର ନୀତିଶିକ୍ଷା ବାକ୍ୟରେ ନୁହେଁ, ମାତ୍ର କେବଳ ଆଚରଣରେ ପ୍ରସାର ଲାଭ କରେ । ସେଥିପାଇଁ ସାଧାରଣତଃ କୁହାଯାଏ, "ଯାହା ନ ଦେଖିବ ଦୁଇ ନୟନେ, ପରତେ ନ ଯିବ ଗୁରୁବଚନେ ।" କୃଷିଶିକ୍ଷାରେ କାହିଁକି, ସକଳ ଶିକ୍ଷାରେ, ବିଶେଷ କରି ନୀତିଶିକ୍ଷାରେ ଏହାର ଗୁରୁତ୍ୱ ସର୍ବାଧିକ । ପିତାମାତା, ଭାଇବନ୍ଧୁ—ସମଗ୍ର ପରିବାରର ପରିବେଶ ଆଧ୍ୟାତ୍ମିକ ମୂଲ୍ୟବୋଧର ପ୍ରତୀକ ହେବା ଉଚିତ । ଏହା ଆଧ୍ୟାତ୍ମିକ ଚେତନାର ଜ୍ୱଳନ୍ତ ଦୃଷ୍ଟାନ୍ତ ହେବ । ପରିବାର ଓ ପିତାମାତାଙ୍କ ସହିତ ପରିବାରେତର ଶିକ୍ଷାନୁଷ୍ଠାନ ଓ ଶିକ୍ଷକ ଏହି ବିଷୟରେ ସଚେତନ ହେବା ଉଚିତ । କଥା, କାମ ଓ ବିଚାରରେ ସମନ୍ୱୟ ରହିବା ଦରକାର । ଶିକ୍ଷାନୁଷ୍ଠାନ ମାନବିକ ମୂଲ୍ୟର

ଉପରେ ଆଧାରିତ ହୋଇଥିବା ହେତୁରୁ ଏହି ସମ୍ପର୍କ ଆଧ୍ୟାତ୍ମିକ ଚେତନାଦ୍ୱାରା ଶାସିତ ଓ ପରିଚାଳିତ ହେବା ଉଚିତ । ଏହାଦ୍ୱାରା ପରିବାର ଓ ପାଠଶାଳା ସମ୍ପର୍କିତ ହେବ । ଶିକ୍ଷକ ଓ ପିତାମାତା ଏକାଭୂତ ଉଦ୍ଦେଶ୍ୟ ଦ୍ୱାରା ପରିଚାଳିତ ହେବେ, କାରଣ ଜନନୀ ହେଉଛନ୍ତି ଶିଶୁର ପ୍ରଥମ ଶିକ୍ଷକ ଓ ଶିକ୍ଷକ ଶିଶୁର ଦ୍ୱିତୀୟ ଜନନୀ ।

ଏହି ବିଚାରର ପ୍ରତିଫଳନ କିପରି ଶିକ୍ଷକଙ୍କ ଜୀବନରେ ହୋଇଥିଲା ତାହା ଏଠାରେ ସ୍ମରଣୀୟ । ଆଜିର ନୁହେଁ ଏହା କେତେଦିନ ତଳର କଥା । ସେତେବେଳେ ସିନେମା ଆମ ଜୀବନଯାତ୍ରାରେ ପ୍ରବେଶ କରୁଥାଏ । କେତେକ ଯୁବକ ସିନେମାଘର ଦେଖି ନ ଥାନ୍ତି, ସେମାନେ ଜଣେ ବୟସ୍କ ଲୋକଙ୍କୁ ରାସ୍ତାରେ ଦେଖି ପଚାରିଲେ, "ଆଜ୍ଞା, ସିନେମାଘର କେଉଁଠି ?" ବୟସ୍କ ଜଣକ ତୁରନ୍ତ ଉତ୍ତର ଦେଲେ, "ମୁଁ ଜାଣେ ନାହିଁ ।" ଏହାପରେ ଟିକିଏ ରହିଯାଇ ସେହି ବୟସ୍କ ଲୋକ ଯୁବକମାନଙ୍କୁ ପଛରୁ ଡାକି କହିଲେ, ଆରେ ପିଲାମାନେ, ମୁଁ ଭୁଲ କହୁଛି, ମୁଁ ଜାଣେ ସିନେମାଘର କେଉଁଠି । କିନ୍ତୁ ତୁମେ ଜାଣ, ଏଥିରେ ଯେ ପ୍ରକାର ନଗ୍ନ ଚିତ୍ର ଓ ଅଶୋଭନୀୟ ବିଷୟ ରହୁଛି, ଏହା ନରକର ଦ୍ୱାର ହୋଇ ପଡ଼ୁଛି । ତେଣୁ ମୁଁ ତୁମକୁ ସିନେମାଘର ଦେଖାଇ ଦେବି ନାହିଁ ।" ସେହି ବୟସ୍କ ଲୋକ ଜଣକ ସେମାନଙ୍କର ପ୍ରଧାନ ଶିକ୍ଷକ । ପରେ ସେମାନେ ଏହା ଜାଣିପାରି ସଙ୍କୋଚ ଅନୁଭବ କରିଥିଲେ । ବାସ୍ତବରେ ନୀତିଶିକ୍ଷା କେବଳ ଗୋଟିଏ ବିଷୟ ନୁହେଁ, କିମ୍ବା କୌଣସି ବିଷୟର ଗୋଟିଏ ପାଠ ନୁହେଁ, କିମ୍ବା କୌଣସି ପିରିଅଡ଼ରେ ପାଠ ନୁହେଁ । ପରିବାରର ପ୍ରତିପାଳନରେ ଓ ଶିକ୍ଷାପ୍ରତିଷ୍ଠାନର ଶିକ୍ଷାକ୍ରମରେ ଏହା ପ୍ରତିଫଳିତ ହୋଇଥାଏ । ଆଚାର ଓ ବିଚାରର ଅବିଚ୍ଛେଦ୍ୟ ଅଙ୍ଗ ହୋଇଯାଏ । ଏ ପ୍ରକାର ପରିବେଶ ମଧ୍ୟରେ ଶିଶୁ ନିଜ ସ୍ୱୀକୃତି ଲାଭ କରେ ଓ ଜୀବନ ନିର୍ମାଣ ପାଇଁ ସେ ଉତ୍ସାହ ପାଏ ।

ଅଭିରୂଣୀର ବାପା ଗାଁ ରେ କାମ କରୁଥିଲେ । ସେ ପରୀକ୍ଷାରେ ପାଶ କରି ନାହାନ୍ତି । ସେ ଏବେ ସହରରେ କାମ କରୁଛନ୍ତି । ପରୀକ୍ଷାରେ ପାଶ ସାର୍ଟିଫିକେଟ ଯୋଗାଡ଼ କରିଛନ୍ତି । ପ୍ରତିଦିନ କାମରୁ ଫେରିଆସି ସେ

ନିଜକଥା ଅନ୍ନପୂର୍ଣ୍ଣୀର ମା'କୁ କହନ୍ତି । ସେ ଦିନଯାକ କି କି କାମ କରନ୍ତି । କିପରି କାହାକୁ ଠକାଇ ଦେଇଥିଲେ, ଏବେ ବି ସେ କିପରି ଠକାଇ ଦେଉଛନ୍ତି, ସେସବୁ ବାହାଦୁରି କରନ୍ତି । ଅନ୍ନପୂର୍ଣ୍ଣୀ ବଜବଜିକା ଖେଳୁ-ଥାଏ, ଖେଳରେ ମାତି ରହିଥାଏ । କିନ୍ତୁ ଏସବୁ କଥା ତା କାନରେ ପଡ଼େ । ବାପା ଓ ମା' ଭାବୁଥାନ୍ତି, ଅନ୍ନପୂର୍ଣ୍ଣୀ ଏଥିରୁ କଅଣ ବୁଝିବ ? କିନ୍ତୁ ଅନ୍ନପୂର୍ଣ୍ଣୀ ଭାବୁଥାଏ, ବାପା ଏସବୁ କିପରି କରୁଛନ୍ତି ?

ଅନ୍ନପୂର୍ଣ୍ଣୀ ନଜର କରେ, ବାପା ପେଣ୍ଟ ଖଣ୍ଡିକ ବାହାର କରି ଖଣ୍ଡିଏ ଲବଠା ପିନ୍ଧନ୍ତି । ଏଖଣ୍ଡିକ ମା'ର ଛିଣ୍ଡା ଶାଢ଼ୀପରି । କିନ୍ତୁ ଏତେ ଲମ୍ବା ନୁହେଁ । ସକାଳୁ ବାପା ଗାଧୋଇସାରି ମଠା ପିନ୍ଧି ପୂଜା କରନ୍ତି । ମଠା ଖଣ୍ଡିକ ଗେରୁ ରଙ୍ଗର । ପୂଜାରୁ ଉଠି ଆଉ ଖଣ୍ଡେ ସେମିତିକା ଲବଠା ଘୋଡ଼େଇ ହୋଇ ଭାତ ଖାଆନ୍ତି । ଏହାପରେ ସେ ପେଣ୍ଟ ପିନ୍ଧି ସହରକୁ ବାହାରି ଯାଆନ୍ତି । ଆଚ୍ଛା, ବାପା ଏପରି ଭଳିଭଳିକା ଲୁଗା ପିନ୍ଧନ୍ତି କାହିଁକି ? ସେ ଜମା ବୁଝିପାରେ ନାହିଁ । କିନ୍ତୁ ମନରେ ଏପରି ପ୍ରଶ୍ନ ଆସେ । ବାପାଙ୍କୁ ସାହସ କରି ପଚାରି ପାରେ ନାହିଁ । କିପରି କଅଣ ପଚାରିବ, ଏହା ସେ ସ୍ଥିରକରି ପାରେ ନାହିଁ । ବେଳେବେଳେ ମା'କୁ ଏଣୁତେଣୁ ପଚାରି ଦିଏ । ମା' ବି ଉତ୍ତର ଦିଅନ୍ତି ନାହିଁ । ଏମିତି କେତେ ପ୍ରଶ୍ନ ସେ ମା'କୁ ପଚାରେ । ତା'ର ଖଲଖଲିଆ ଖୋଲା ମନ ମା' ପାଖରେ ଅଜାଡ଼ି ଦିଏ । ମା ଚୁପ୍‌ଚାପ ରହିଯାଏ । ପାଟିରୁ ପଦେ ଉତ୍ତର ବାହାରେ ନାହିଁ । ଏ ବିକଟେ ଝିଅ ଏତେ କଥା କାହିଁକି ପଚାରୁଛି, ଏହା ଭାବି ମା' ଭୟ କରେ । ଯା ଝିଅକୁ ସାପ କାମୁଡ଼େ, ସେ ମା' ପାଳ ଦୌଡ଼ି ଦେଖିଲେ ଡରିଯାଏ । ଅନ୍ନପୂର୍ଣ୍ଣୀ ମା'ର ଅବସ୍ଥା ଠିକ୍ ସେଇପରି ।

ଶିଶୁପାଳନ ଏକ ବୈଜ୍ଞାନିକ ପ୍ରକ୍ରିୟା । ଶିଶୁର ଜନ୍ମ ସହଜ ହୋଇପାରେ । କିନ୍ତୁ ତା'ର ପାଳନ ପାଇଁ ସାଧନା ଆବଶ୍ୟକ । ଶିଶୁ ଓ ତା'ର ଆବଶ୍ୟକତାକୁ ବୁଝିବାକୁ ହେବ । ଆମକୁ ସହନଶୀଳ ଓ ସଯତ୍ନ ହେବାକୁ ହେବ । ସୁନାପିଲା ଏକ ସ୍ୱପ୍ନ ନୁହେଁ । ଏହା ଏକ ଡାକ ନାଁ ନୁହେଁ । ଏଥିପାଇଁ ପିତାମାତା ଓ ଶିକ୍ଷକ ସମସ୍ତେ ବୁଝିଶୁଝି କାମ କରିବେ । ଜଣେ ଦି'ଜଣ ପିଲାଙ୍କୁ ସୁନା କଲେ ହେବ ନାହିଁ । ଏ ଦେଶର ସବୁପିଲା ସୁନାପିଲା ହେବେ ।

* *

# ଅଠେଇଶ ଅଧ୍ୟାୟ

## ଅଧ୍ୟାୟରୁ ଅଧେ—

ମାକ୍ସିମ୍ ଗର୍କୀଙ୍କ ସୃଷ୍ଟି ବିଶ୍ୱବିଶ୍ରୁତ 'ମା' ଗ୍ରନ୍ଥର ଚର୍ଚ୍ଚା କରାଯାଇ ନାହିଁ । "ସ୍ୱର୍ଗାଦପି ଗରୀୟସୀ" ଜନନୀ ଓ ଜନ୍ମଭୂମିର ଚିନ୍ତା ଏବେ ମନରେ ନାହିଁ । ନିତ୍ୟସ୍ମରଣୀୟ ପଞ୍ଚକନ୍ୟାଙ୍କ କଥା କୁହାଯାଉ ନାହିଁ । ଶ୍ରୁତି ଓ ସ୍ମୃତିରେ ଜଡ଼ିତ ତଥା ଇତିହାସରେ ରଞ୍ଜିତ ଅନନ୍ୟ ସାଧାରଣ ମାତୃଶକ୍ତିର ପୁନରାଲୋଚନା ଏଠାରେ କରାଯାଉ ନାହିଁ । "ମାତୃଦେବୋ ଭବ" ଏପରି ସବୁ ଉଦାତ୍ତ ଭାବ ଯେ ସ୍ମୃତି ପଟଳରୁ ଧୀରେ ଧୀରେ ଲୋପ ପାଇଛି—ସେଥିପାଇଁ ଅନୁଚିନ୍ତାର ଅବକାଶ ନାହିଁ । ଯାଇଛି, ଅଛି ଓ ଆସୁଛି—ଏହି ତିନି ସ୍ତରରେ କାଳଜୟୀ ପରିବାରକୁ ବୈଳୁଣ୍ଠ ସମାନ କରିବା ଆଶାରେ ଜନନୀର ଛିନ୍ନ ପଣତକୁ ଯୋଡ଼ି ଦେବାର ଆଶା ନାହିଁ । ସରକାରୀ ନଥିପତ୍ରରେ "ପାଠମା"ର ପୁନଃ ନିଯୁକ୍ତିକୁ ସାବ୍ୟସ୍ତ କରିବା ପାଇଁ ଏଠାରେ ଯୁକ୍ତି କରାଯାଉ ନାହିଁ ।

ଏହା ଏକ ନାହିଁର ଅଭିଧାନ ହେବ । ନେତିରେ ପୋଥି ହୋଇଯିବ । ଏପରି ସ୍ଥଳରେ ନାସ୍ତି ଓ ଅସ୍ତି ପରସ୍ପର ବିରୋଧାତ୍ମକ ନୁହେଁ । କୌଣସି କାଳରେ ନାସ୍ତି ଓ ଆସ୍ତି ପରସ୍ପର ପରିପୂରକ ହୋଇ ନାହିଁ ଓ ହେବାର ଆଶା ନାହିଁ । ଜନନୀହିଁ ଏହାର ଏକମାତ୍ର ବ୍ୟତିକ୍ରମ । ସେଥିପାଇଁ ଗାନ୍ଧୀଙ୍କ ଭାଷାରେ ତାଙ୍କ ଜନନୀ ହେଉଛନ୍ତି 'ନିରକ୍ଷର କିନ୍ତୁ ପ୍ରାଜ୍ଞ' । ଅକ୍ଷର ଶିକ୍ଷାରୁ ବିବର୍ଜିତ ହେଲେହେଁ ନିଜ ଜୀବନରେ ସେ ଆନ୍ତର ଓ ବାହ୍ୟର ସମନ୍ୱୟ କରିଛନ୍ତି । ତାହାହିଁ ବିଜ୍ଞତା ଓ ପ୍ରଜ୍ଞା । ସେଥିପାଇଁ ଅକ୍ଷର ଶିକ୍ଷା ଆବଶ୍ୟକ ନୁହେଁ । ମିଳିତ ଜାତିସଂଘର ମାନବିକ ଅଧିକାର ଘୋଷଣାରେ ର ଗାନ୍ଧୀବାଣୀ ଉଦ୍‌ଘୋଷିତ ହୁଏ, ମୁଁ ମୋ ନିରକ୍ଷର କିନ୍ତୁ ପ୍ରାଜ୍ଞ ମା'ଙ୍କଠାରୁ ଶିଖିଛି, ପ୍ରତ୍ୟେକଟି ଅଧିକାର ଜାହିର କରାଗଲାବେଳେ ତଦ୍ରୂପ କର୍ତ୍ତବ୍ୟର ସ୍ୱୀକୃତି ଦେବାକୁ ପଡ଼ିବ ।" ଏ ଶିକ୍ଷା କେବଳ ଜନନୀଙ୍କ ଠାରୁ ମିଳିପାରେ, ମାତୃସମ ବ୍ୟକ୍ତି ଦେଇ ପାରନ୍ତି ।

ଆପନ୍ତୁ, ସ୍ମରଣ କରିବା, ବସୁନ୍ଧରା ଗର୍ଭରୁ ଅଣ୍ଡାଳ ଦେଖିବା, ଯେ ଆମ ଜନନୀ, ସେ ଆମ ଶିକ୍ଷକ । ଏହା ଆଜିର କଥା ନୁହେଁ କିମ୍ବା ଆମ କଥା ନୁହେଁ । ଏହା ଇତିହାସର କଥା । ସମସ୍ତଙ୍କ କଥା, ସବୁ ଯୁଗରେ ସମସ୍ତଙ୍କ ପାଇଁ ସତ୍ୟ । ଏହି ସତ୍ୟ, ସମୟରେ ଅନାଦି ଓ ପ୍ରାଧାନ୍ୟରେ ପ୍ରଥମ ।

## ଅଧ୍ୟାୟ ଏକ—

ସେଥିପାଇଁ ଜନନୀ ହେଉଛନ୍ତି ପ୍ରଥମ ଶିକ୍ଷକ, ସେ ମୂକକୁ ବାଚାଳ କରନ୍ତି । 'ପଙ୍ଗୁମ୍ ଲଙ୍ଘୟତେ ଗିରି' । ଏପରି ବହୁ ଦୃଷ୍ଟାନ୍ତ ଓ ଏସବୁ **Neuromotor development** ଗୋପନରେ ଆଖୁରସ ମଧ୍ୟରେ ଶର୍କରା ରହିଲା ପରି ଦବେଇଛି 'ମା' ଡାକରେ ମା ପାଇଁ କେତେ କାବ୍ୟ, କବିତା, ପୁରାଣ ରହିଥାଏ । ଜଡ଼ା ଠାରୁ ଜଡ଼ା ମା ଜାଣିଲା ପରି ସବୁ ବୁଝନ୍ତି ଓ ବୁଝାନ୍ତି ଜନନୀ । ମା ଆଡ଼କୁ ପିଲାର ଟଳ ଟଳ ଗୋଡ଼ ଅଟଳ ମେରୁପରି ଗୁଳିଆସେ । କି ଅଦ୍ଭୁତ **Muscular co-ordination** । ଇଙ୍ଗିତ କାହାର ? ଉଦ୍ଦୀପକ କିଏ ? ଜୀବନ୍ତ କଣ୍ଢେଇ ନାଚ କିଏ କରାଏ ? ତାକ ଥେଇ ଥେଇ ତାଥେଇ ନାଚ, ଧୂ-ପାଣ୍ଡୁରେ ବୁନା ସୁନା ଗଡ଼ିଆରେ ପଡ଼ିବ । ଘୁଚଡ଼ିଆ କେବେ ନୁହେଁ । ଏଇଠୁ ଏପରି ମାତୃଶିକ୍ଷା ର ଆରମ୍ଭ । ପାନ ଦେଇ, ଚୂନ ଦେବା ମାଟିର କାଳିଆ ବଳଦ ଅସମ୍ଭାଳ । ହାଣ୍ଡି କୁଣ୍ଡି ଭାଙ୍ଗି ଚୁରମାର । ହସି ହସି ପେଟ ଫାଟିଲାବେଳକୁ ଚାଟ କରି ଚୂପ୍‌ଚାପ । ମା ଓ ଶିଶୁ ଉଭୟଙ୍କ ପାଇଁ କେତେ ହସ ଓ ହାସ୍ୟରସ । ବୁନୁ ବୁଢ଼ା ଲାଜ ନୁହେଁ, ସେ ମା' ପିଠିରେ ଲାଜ । ନଖ ମାରି ବୁଢ଼ାବୁଢ଼ୀ ପରୀକ୍ଷା । ଆଉଁସି, ଅଣ୍ଡାଳ, ଧରି, ଠେଲି ପେଲିବାର ପିଆଜେଙ୍କ ଭାଷାରେ ବିକାଶ, ମାନସିକ ବିକାଶ ଓ ଜ୍ଞାନର ବିକାଶ ।

ପରି ପରୀକ୍ଷା ଦେଇ ନାହିଁ । ପାଠରେ ପଶି ନାହିଁ । ବୟସ ପାଞ୍ଚ ହୋଇ ନାହିଁ । ମଣ୍ଡା ଖାଇ ହେଣ୍ଡା ମାରୁଛି ପରି । କିନ୍ତୁ ପିଲାବେଳର ମଣ୍ଡା ନୁହେଁ । 'ମା ଏବେ ମନ ଦେଉ ନାହିଁ । ସେ ପୁରି ନ ହିଁ, ଛେନା ନଡ଼ିଆ, ଗୁଡ଼ର ପୁର' । ଏ ଆତ୍ମଜ୍ଞାନ ପରିର । ଗୁରୁରୁ ପାଞ୍ଚ ବର୍ଷ ବୟସର ଫରକ ସେ କରୁଛି । ମା'କୁ ମାଗୁଛି । କଥା, ଗ୍ଲୁଭୁସା,

ଘରଭଙ୍ଗୀରେ ସେ ମା'ର ଆଶାକୁ ଝପି ଯାଇଛି । 'ପରକୁ ପାଶ ହେବ ନାହିଁ' । ହଁ, ଭଲ କଥା, ମା ହାରି ଯାଇଛନ୍ତି । ଶିଷ୍ୟାତ୍ ଇଚ୍ଛେତ୍ ପରାଜୟମ୍ ! ଏ ତ ମାଆର ମନ କଥା ।

ଏଥରବାର ହୋଇଛି ପାଠଶାଳା । ଏଠି ଉପକରଣ ନାହିଁ । କଳା-ପଟା ନାହିଁ । ଚେଲ ହଳଦର ଅଲଗା ଦାଗ । ଏ ଶିକ୍ଷକ ଜନ୍ମଦେଳର । ସେ ଜନ୍ମରୁ ଶିକ୍ଷକ । She is a born teacher ant a teacher made, ତାଙ୍କ ପାଇଁ ଟ୍ରେନିଂ କାହିଁ ? ପାଠ ବହି ସେ ଦିଗ ଖୋଲି ନାହାନ୍ତି । ଅଣ ଆନୁଷ୍ଠାନିକ ଶିକ୍ଷା ସେଇଠି ଆରମ୍ଭ । ସେଥିପାଇଁ ଶିକ୍ଷା ଓ ବ୍ୟକ୍ତିର ଇତିହାସର ମୂଳ ଏହି କଥା । ଏହି ବିଦ୍ୟାଳୟରେ ପିଲେ ଆତ୍ମବିଚ୍ ହୁଅନ୍ତି, ମନ୍ତବ୍ଧ ନୁହନ୍ତି । ଏଠି ପଢ଼ା ନାହିଁ, ପ୍ରଶ୍ନୋତ୍ତର ହୁଏ । St imulus variation କରାଯାଏ । Reinforcement ହୁଏ । ଏଠି Everything is caught, nothing is taught ସମ୍ଭବତଃ ସେଥି-ପାଇଁ ଶ୍ରୀ ଅରବିନ୍ଦ କହନ୍ତି, Nothing can be taught.

## ଅଧ୍ୟାୟ ଦୁଇ—

ଜନନୀ ସିନା ପ୍ରଥମ ଶିକ୍ଷକ, ଶିକ୍ଷକ ହେଉଛନ୍ତି, ଦ୍ୱିତୀୟ ଜନନୀ । ପରିବାରରେ ଜନନୀ ହେଉଛନ୍ତି ପ୍ରଥମ ଶିକ୍ଷା ଓ ଶିକ୍ଷାୟତନରେ ଶିକ୍ଷକ ହେଉଛନ୍ତି ଦ୍ୱିତୀୟ ଜନନୀ । ଦ୍ୱିତୀୟ ଜନନୀକୁ ପ୍ରଥମ ଜନନୀ ଦାୟିତ୍ୱ ଦେଇଛନ୍ତି । ସମସ୍ତେ ଜନନୀ । ଏଥିପାଇଁ ପାଶ୍ଚାତ୍ୟ ଦେଶରେ ପ୍ରାଥମିକ ବିଦ୍ୟାଳୟର ପ୍ରାୟ ସବୁ ଶିକ୍ଷକ ହେଉଛନ୍ତି ନାରୀ, ମା' । ଏବେ ପର କଥା ବୁଝିବା ସେ ପାରିଛି । ପ୍ରବେଶିକା ପରୀକ୍ଷାରେ ପାଶ୍ କରିଛି । ତା'ର ନାମ ଲେଖାଯାଇଛି । ଶିକ୍ଷକ ଉପସ୍ଥାନ ନେଉଛନ୍ତି । ପିଲେ ଗୋଟିକ ପରେ ଗୋଟିଏ Pr sent Sir କହୁଛନ୍ତି । ଏହାପରେ ଗଡ଼ ଗଡ଼ ହୋଉକୁ ଆସିଲା ବେଳକୁ, ପର ଶୁଣି ଶୁଣି ତା' ପାଟିରୁ ବାହାରି ଆସିଛି Prison, Sir, ସେ Presentର ଅର୍ଥ ବୁଝେ ନାହିଁ, କମ୍ବା Prison ଅର୍ଥ ବୁଝେ ନାହିଁ । ତା ସାଙ୍ଗ ପିଲେ ବି ବୁଝନ୍ତି ନାହିଁ । ସେ ଆଜ ପ୍ରିଜନ୍‌ରେ । କେତେ ଭୟ, କେତେ ମାଡ଼ । ଘର ମାଡ଼ରେ କୋଳଥ ଗୁଣ୍ଡା ହେଲାପରି ବଡ଼ ପିଲଙ୍କ ହାଡ଼ଭଙ୍ଗା ମାଡ଼ ଦେଖି ତା'ର ଛାନିଆ । ଗୋଟା ଦେହରୁ

ମୋଟା ଝାଳ । କି କଥା ସେ କରି ? ବହି ବସ୍ତାନି ଦେଖି ସେ ଛୁଟିଆ । ଚୁପ୍‌ଚାପ ସେ ବସିଥାଏ ଆଖିବୁଜି, କାନଡେରି, ଚକାପକାଇ ସେ ହାତ ଯୋଡ଼ିଥାଏ । ସତେ ଯେପରି museumର dead specimen ଏହା ରବୀନ୍ଦ୍ରନାଥଙ୍କ ଭାଷା । ପିଲାଙ୍କନେ ରବୀନ୍ଦ୍ରନାଥ ଥୋପି ଖାଇଛନ୍ତି । ପିଲେ ଧାଡ଼ି ଧାଡ଼ିରେ ସ୍କୁଲ ଛୁଟିଛନ୍ତି । ରବୀନ୍ଦ୍ରନାଥ ବାଇଆ । ସେ ସ୍କୁଲ ଯିବେ । ତେଣୁ ସେ ଥୋପି ଖାଇ ଥଣ୍ଡା ହୋଇଛନ୍ତି । ଦେଶ ସ୍ୱାଧୀନ ହେଲା । କେତେ କ'ଣ ପରିବର୍ତ୍ତନ ହେଲା । କିନ୍ତୁ ସ୍କୁଲର ଶିକ୍ଷକ ଥୋପି-ଦିଆ ଜନକ ହୋଇ ରହିଲେ । ଦ୍ୱିତୀୟ ଜନନୀ ସେ ହେଲେ କି ?

ଏବେ ବି କିଛି କରିଯାଇ ପାରନ୍ତା । ପରିବାରରୁ ପାଠଶାଳା— ଠିକ୍ ମା'ଙ୍କ ପାଖରୁ ମାମୁଁ ଘରକୁ ଗଲପରି ହୁଅନ୍ତା । ଶିକ୍ଷକ ମା'ଙ୍କ ପରି ହୁଅନ୍ତେ । ଅପେକ୍ଷା କରନ୍ତେ । ଆତ୍ମପ୍ରକାଶ ଆପେ ହେବ । ସଂଯମୀ, ଶାନ୍ତ ଓ ସହିଷ୍ଣୁ ହୁଅନ୍ତେ । ତାଙ୍କ ପ୍ରାଣରେ ପିଲେ ରହନ୍ତେ । ସେ ବୁଝନ୍ତେ ଓ ବୁଝାଇ ଦିଅନ୍ତେ । ପିଲାଙ୍କ ଶିକ୍ଷା ସେମାନଙ୍କ ଲାଳନ ପାଳନ ।

ଅତେଇ ଅଧ୍ୟାୟ ସରୁଛି । ମୂଳ କଥା ହେଉଛି, ଜନନୀ ହେଉଛନ୍ତି ପ୍ରଥମ ଶିକ୍ଷକ ଓ ଶିକ୍ଷକ ହେଉଛନ୍ତି ଦ୍ୱିତୀୟ ଜନନୀ ।

## ଉପସଂହାର—

ପରିଶେଷରେ ଉଭୟଙ୍କ ଭାବ, ଶିଶୁର ସ୍ୱଭାବ ପରି ହେବା ଉଚିତ । ଉଭୟ ଶିଖିବେ ଓ ଶିଖିବା ପାଇଁ ସର୍ବଦା ମନକୁ ଉନ୍ମୁକ୍ତ ରଖିବେ । ଶିଶୁଠାରୁ ଶିଖିବେ । ପରି, ମନୁ, ବୁନୁ ହେବେ ଶିକ୍ଷକ । ପରିବାରର ଜନନୀ ଓ ଶିକ୍ଷାୟତନର ଶିକ୍ଷକ ଶିକ୍ଷା ଗ୍ରହଣ କରିବେ । ଅବଧୂତଙ୍କ ଦୀକ୍ଷା ନେବେ । ଶିଶୁକୁ ଗୁରୁ କରିଥିଲେ ଅବଧୂତ—

ଶିଶୁର ନାହିଁ ପରାପର । ସକଳ ଦେଖଇ ଈଶ୍ୱର ॥

* *

# ଏ ଯୁଗର ଗାଳି

ରାତି ପାହି ନାହିଁ । ଟିକିଏ ଫର୍ଚ୍ଚା ପଡ଼ୁଛି । ଝାପ୍‌ସା ଦିଶୁଛି ରାସ୍ତା, ଗଛ, ଘର, ଘାସ । କୁଆ, କୋଇଲି ବି ଉଠି ନାହାନ୍ତି । କିଏ କହିବ, ଏଇଟା ଶୁଭ ବେଳା । ସବୁଥିରୁ ଭଲ । ଆଉ କିଏ ବି କହିବ, ଏଇଟା ସଞ୍ଜ ଉଠା, ସବୁ ଲାଭର ମୂଳ କାରଣ । ଏସବୁ କିଛି ବୁଝି ନାହିଁ ଶରତ୍ । ସେ ଏକରକମ ବାଉଳା । ରାତିଟା ନିଦ ନାହିଁ । ମନ ତା'ର ଚଞ୍ଚଳ । କିଏ ଜାଣିଛି, କିଏ ଜାଣେ । ସେ ଅଥୟ । ଶେଯ ସୁଖ ତା'ର ଅଯଜ ହୋଇଛି । ବିଛଣାରେ ପଡ଼ିଛି, ତା'ର ମନ ଅଲିଫ୍, ବେ, ପେ, ତେ, ଟେ, ସେ .....ଆଦି ଉର୍ଦ୍ଦୁ ଫଳକରେ । ସେ ବାରମ୍ବାର କହୁଛି ଜିମ୍, ଚେ, ହେ...... । ଆଖିକୁ ନିଦ ଆସୁ, ଉର୍ଦ୍ଦୁ ଶିକ୍ଷା ସେତିକି ରହୁ, ଏହା କହି ନିଜର ଅମାନିଆ ମନକୁ ଶାସନ କରୁଛି । ପହିଲି କିତାବ ସରିଛି । ସରଫ୍ ତାକୁ ଦୁସ୍‌ରି କିତାବ ଦେବ । ସେଥିପାଇଁ ସେ ଧାଇଁଛି । ସରଫ୍ ଉଠି ନାହାଁ । ତାଙ୍କ ଘର ସମସ୍ତେ ଶୋଇଛନ୍ତି । ଶରତ୍ ଧୀରେ ଧୀରେ ଡାକୁଛି, "ସରଫ୍, ସରଫ୍ ପହିଲି କିତାବ ନିଅ, ଦୁସରି କିତାବ୍ ଦିଅ ।"

ଚଞ୍ଚଳ ମନ ଚହଲ ପକାଇ ଦେଇଛି । ସରଫ୍ ଘରେ ସମସ୍ତେ ଆବାକାବା । ଦୁସରି କିତାବ ସେ ନେବ । ଫିରଭି ଆଉ କିତାବ ସେ ନେବ । କିଷ୍ଣଚନ୍ଦରଙ୍କର "ଗଦ୍ଧେ କି ୱାପସି" ନ ପଢ଼ିଲେ ସେ ଛାଡ଼ିବ ନାହିଁ । "ବାମନ ପତ୍ରେ"ର ଲୋଭ ରହିଛି । ରାଜେନ୍ଦ୍ର ସିଂହ ବେଦୀଙ୍କ ବହି ପଢ଼ିବ । ପ୍ରେମଚନ୍ଦ୍, ଇକବାଲଙ୍କୁ ମଧ୍ୟ ସେ ପଢ଼ିବ । ଉପଭୋଗ କରିବ । ସରଫ୍ ଘରେ ଏସବୁ ଯୋଜନା । ସରଫ୍‌ର ମା "ଚୋବା", "ଚୋବା" କହି ଶରତ୍‌ର ତାରିଫ କରୁଛନ୍ତି । କିନ୍ତୁ ଶରତ୍‌ର ମା ଅଧୀର ହେଲେଣି । "ବୁଢ଼ା ପୁଅଟା, ଏତେବଡ଼ ହେଲାଣି । ନିଜକଥା ନିଜେ ବୁଝୁ ନାହିଁ ।"

ଏଣ୍ଡୁ ରୁ ବଦ୍ଧରେ ପାଦ ଦେଇଛନ୍ତି ଶରତ୍ । କାନରେ ପଡ଼ିଗଲା, 'ବୁଢ଼ା ପୁଅଟା' । "ନା, ନା, ମା', ମୁଁ ବୁଢ଼ା ନୁହେଁ, ମୋ ମନ ଛୁଆ । ମୋ ମନ କଅଁଳ, ଚଞ୍ଚଳ ଓ ଝଲକଲ ।"

ଶରତ୍ ସବୁ ଗାଳି ସହିପିବ । ସବୁ ମାଡ଼ ପିଠେଇ ନେବ । କିନ୍ତୁ କେହି ଯଦି କହିବ, "ତୋର ମନ ବୁଢ଼ା", ସେ କେବେହେଁ ଖମ୍ଭାଳିବ ନାହିଁ ।

ସେ ଦିନର କଥା । ଶରତ୍ ଶ୍ରେଣୀରେ । ସବୁଯାକ ନବମ ଶ୍ରେଣୀର ବୋର୍ଡ଼ ପାଠ । ସାର୍ କହିଲେ, "ଶଲକାର୍ ଏହି ଦଶ ଧାଡ଼ି ବଡ଼ ବଢ଼ିଆ, ସମସ୍ତେ ପଢ଼ି ଦିଅ ।" ଉତ୍ତର ଆସୁଛି, "ଏହା କଅଣ ପରୀକ୍ଷାରେ ପଡ଼ିବ ?" Tolstoyଙ୍କ ଲେଖା A grain as big as a hen's egg ପଢ଼ୁ ପଢ଼ୁ ଟଲଷ୍ଟୟଙ୍କ ଜୀବନୀ କୁହାଗଲା । ଆଉ କେତୋଟି ଗପ ପଢ଼ାଗଲା । "ଏସବୁ କଅଣ ହେବ ? ଆମର ବେଳ କାହିଁ ?" ଏମିତିକା ଉତ୍ତର ଆସିଲା । ଏସବୁ ବୁଢ଼ା ମନର ଚିହ୍ନ ।

"ଛତ୍ରୁଫୁଟା କାଠ, ନଣ ଉଠା ପାଠ"—ଏ କଥା ଶରତ୍ ଶୁଣେ । ତାର ନାହିଁ ଡର । ମନୁଷ୍ୟ ସିନା ବୟସରେ ବୁଢ଼ା ହେବ, ମନ ସବୁଦିନେ ଛୁଆ । କଅଁଳିଆ ଉଙ୍କପଣ ସବୁଦିନେ ଆଗ୍ରହରେ ମାଡ଼ିଯାଏ । ବଡ଼ ମଜା ଲାଗେ ।

ଶରତ୍‌ର ମନ ବୁଢ଼ା ହୋଇଯାଉ, ଏ କଥା ସେ କେବେ ସହିବ ନାହିଁ । ତାଙ୍କ ନବମ ଶ୍ରେଣୀର ଏବେ ନୂଆ ଗାଳି ହୋଇଛି, ତୁମ ମନ ବୁଢ଼ା ହେଉ । ବାପ ଘଣ, ବିଦ୍ୟାଘଣ, ଠାକୁରଙ୍କ ଦୂର—ଏ ଗାଳି ଆଉ ନବମ ଶ୍ରେଣୀରେ ଚାଲୁ ନାହିଁ । ଶରତ୍‌ର ଇଚ୍ଛା, 'ତା'ର ମନ କାଳକାଳକୁ ଛୁଆ ରହୁ ।'

* *

# ଏକ ମନ୍ତ୍ର—ଏକ ସୂତ୍ର

Corner kick, ଥରେ ପାଇଲେ ମୁନ୍ନା ଛାଡ଼େ କି ? ହଠ୍ କରି goa, ନିଶ୍ଚୟ goal । up ମୁନ୍ନା କହିଲା ବେଳକୁ goal ।

କପରି ହେଲା ? ସମସ୍ତେ ବସି ଛ । କି ବେଳକାଳରେ ସେ ମୁନ୍ନା ! ଗୋଡ଼ ଖଣ୍ଡିକ କଅଣ ହୋଇଛି ? ସମସ୍ତେ ବାହା-ବା କହିଲା ବେଳକୁ ସୁଦାମ କହେ "Chance" । ଆଜି ନୁହେଁ, ସବୁଦିନ ମୁନ୍ନାର ଏହି ଖେଳ ଦେଖି ସୁଦ୍ଧା ସୁଦାମର ଗୋଟିଏ ଉତ୍ତର, ମୁନ୍ନା Chanceଟାଏ ପାଇ ଯାଉଛି, ଏସବୁ ବାହାଦୁରି By chance ।

ଦାମ କିନ୍ତୁ ସୁଦାମକୁ ଛାଡ଼େ ନାହିଁ । ଦାମର Chanceରେ ବିଶ୍ୱାସ ନାହିଁ । "ବେଳକାଳ" ତା ମନକୁ ପାଏ ନାହିଁ । ଗୃହୀର ହାତ୍ତକଣ୍ଠ ଓ ବେଉଷଣ ସେ ଦେଖେ । କି ବଚକ୍ଷଣ ସେ ଗୃହୀ ! ଜାମଟି ଯେମିତି ଚଟାପଟ ହେଉଛି, ସେମିତି ବି ସେ ସୁନ୍ଦର ହେଉଛି । ବୁଣାଳୀ, କଂସାରୀ, କୁମ୍ଭାରର କାମ କେତେ ଜନ ! କେତେ କୁଣ୍ଠିକମ ହୋଇଛି । ହାଣ୍ଡି ମାଠିଆର ଝକଝକ ରୂପ । ଅଦ୍ଭୁତ କାରିଗରୀ ନୁହେଁ କି ? ପଥରୁଆ, ବଢ଼େଇ ପଥର ଓ କାଠରେ କି ଅଦ୍ଭୁତ ରୂପ ଫୁଟାଇ ଦେଉଛନ୍ତି । ଜୀବନ ସିନା ନ ଥାଏ, କିନ୍ତୁ ଜୀବନ୍ତ ଦେଖାଯାଏ । ଇମିତି ବହୁତ ଦୃଷ୍ଟାନ୍ତ ଅଛି । ମା' ଚିତା ଦିଅନ୍ତି । ଭଉଣୀ ବଡ଼ ପାରନ୍ତି । ପିଠା କରନ୍ତି । ଏସବୁ କଅଣ Chance ? ଦାମର ଏସବୁ ଅକାଟ୍ୟ କଥା, ସୁଦାମ କାଟିବ କପରି ? ହୋଇପାରେ ଏମାନେ ଘରୁ ଏସବୁ ଶିଖିଛନ୍ତି । ଏ କଳା ଘରେ ଗୁଳୁଛି, ତେଣୁ ତୁଆମାନେ ମନକୁ ମନ ଶିଖି ନେଉଛନ୍ତି । ଦେଖି ଦେଖି ଶିଖି ନେଉଛନ୍ତି । ଫଳରେ ବାହାଦୁରୀ କାହିଁ ? ବାପା, ତାଙ୍କ ବାପା, ବାପାଙ୍କ ବାପା······କରୁଥିଲେ, ତାଙ୍କ ପିଲେ ସେପରି କଲେ, କହିବାର ଓ ବାହା-ବା ଦେବାର କଅଣ ଅଛି ?

ଆଚ୍ଛା, ଆମ ସାଙ୍ଗ ସନା ଖଣ୍ଡେ ପୋଷ୍ଟକାର୍ଡ଼ରେ ଶହେରୁ ବେଶୀ ଧାଡ଼ି ଲେଖି ପାରୁଛନ୍ତି । ଅକ୍ଷର ଯେତେ ଛୋଟ, ପାଠ ସେତେ ବେଶୀ । ସ୍ପଷ୍ଟ ପଢ଼ି ମଧ୍ୟ ହେଉଛି । ଏହା ପୁଣି ହେଲା କିପରି ? ଦାମର ଏ ପ୍ରଶ୍ନକୁ ସୁଦାମର ଉତ୍ତର କାହିଁ ? ଆମ ଶ୍ରେଣୀର ଗୁଣ୍ଡି ବାଣୀ ନୃତ୍ୟରେ ନିପୁଣା, ସାରା ଓଡ଼ିଶାରେ ନାଁ କଲାଣି । ବନ୍ଧୁଚାରୁ କଣ୍ଠ ସଙ୍ଗୀତ ଏତେ ଭଲ ହେଲା କିପରି ? ବାଣୀ ଓ ବନ୍ଧୁଚା କେବେ ଯେ ଅଭ୍ୟାସ କରିଛନ୍ତି କହି ହେବ ନାହିଁ । ପିଲାଦିନରୁ ଅଭ୍ୟାସ କରିବାରେ ଲାଗି ପଡ଼ିଛନ୍ତି । ଅଭ୍ୟାସ ଓ ଅନୁଶୀଳନ କରି ଦକ୍ଷତା ହାସଲ କରି ହେବ ।

ଆହୁରି ଦେଖାଯାଉ । ଲେଖକଙ୍କୁ, ଲେଖିବାର ଅଭ୍ୟାସ କରିବାକୁ ପଡ଼େ । ଖୁବ୍ କଷ୍ଟ କାମ । ଘଣ୍ଟା ଘଣ୍ଟା ବସିବାକୁ ପଡ଼ିବ । ନିଜର ଚିନ୍ତାକୁ ସଜାଡ଼ିବାକୁ ହେବ । କବି ସମ୍ରାଟ, କବିସୂର୍ଯ୍ୟ, ଚନ୍ଦ୍ରଶେଖର ପ୍ରମୁଖ ଆମ ଦେଶ ଓ ଦେଶାନ୍ତରରେ ଯେଉଁ ସାହିତ୍ୟ ସ୍ରଷ୍ଟା ଅଛନ୍ତି ସେମାନଙ୍କୁ ଭୋକ, ଶୋକ ଭୁଲିଯିବାକୁ ପଡ଼େ । ବୈଜ୍ଞାନିକମାନଙ୍କ ଜୀବନରେ ସେଇଆ ଘଟେ । "ଆପଣ ଖାଇବାକୁ ଆସନ୍ତୁ ।" ଏହାର ଉତ୍ତରରେ ସେମାନେ କହନ୍ତି, "ମୁଁ କଅଣ ଖାଇ ନାହିଁ ?" ନିଜ ଗବେଷଣାରେ ସେମାନେ ଏତେଦୂର ତନ୍ମୟ ହୁଅନ୍ତି ଯେ ଖାଇବା ଶୋଇବା ଆଦି ପ୍ରତି ସେମାନଙ୍କର ଦୃଷ୍ଟି ରହେ ନାହିଁ ।

ବିଜ୍ଞାନର ଅନ୍ୟ ନାମ ସାଧନା ।

ସାଧନା ବିନା ସୃଷ୍ଟି ଅସମ୍ଭବ । ସାହିତ୍ୟ, ଶିକ୍ଷା, ବିଜ୍ଞାନ, କଳା ଆଦି କ୍ଷେତ୍ରରେ ମାନବ ସମାଜ ସାଧକମାନଙ୍କ ଦ୍ୱାରା ସମୃଦ୍ଧ ହେଉଅଛି । ଦସ୍ୟୁ ରତ୍ନାକର ଭଇ ହୁଙ୍କା ପାଲଟିଗଲେ । ବହୁ ତପସ୍ୱୀଙ୍କ ଉପରେ ମାପ ଚଢ଼ିଯିବାର ଦୃଷ୍ଟାନ୍ତ ଅଛି । କିନ୍ତୁ ସେଥିରେ ସାଧନା ବିଚଳିତ ହୁଏ ନାହିଁ ।

ସୁଦାମ ବୁଝିଛି । ତା'ର ମନରେ ଏସବୁ ପରିକଳ୍ପନା ଲାଗୁଛି । ତଥାପି ମନ ମାନୁ ନାହିଁ, କାରଣ ସୁଦାମ ଦେଖୁଛି 'ଯେ ଏଇଟା ହେଲା କେତେ କମ୍‌ରେ କେତେ ବେଶୀର ଯୁଗ । ଦାମ ଥମ୍ କରି ଅଟକି ଗଲା ।

"କେତେ କମ୍‌ରେ କେତେ ବେଶୀ"ର ଅର୍ଥ କଅଣ ? ଏଇ ଦେଖ, ହାଟ ବଜାରରେ ଦରଦାମ ଚାଲିଛି, ଖାଉଟିର ଚେଷ୍ଟା କେତେ କମ୍ ପଇସାରେ କେତେ ବେଶୀ ସେ କିଣିବ । ତା'ର ଆଶା ଏପରି ଏକ ବେଳ ଆସିବ ଯେତେବେଳେ ସେ ବିନା ପଇସାରେ ହାଟଟାଯାକ କିଣିନେବ । ସୁଦାମ ଏଇ କଥାକୁ ଫେଣେଇବାରେ ଲାଗିଲା । ଶ୍ରମିକ, ଅଫିସ ଆଦିର କର୍ମୀ, ଅନ୍ୟ ସମସ୍ତେ, ଯେଉଁମାନେ ବେତନ ପାଇ କାମ କରନ୍ତି—ସେମାନଙ୍କର ଇଚ୍ଛା କେତେ କମ୍ ପରିଶ୍ରମରେ କେତେ ବେଶୀ ପଇସା ମିଳିବ । କେତେ କମ୍ ପାଠ ପଢ଼ି ପରୀକ୍ଷାରେ କେତେ ବେଶୀ ନମ୍ବର ପାଇବା, ଏ ଚିନ୍ତା ବି ଆସିପାରେ । ଏଥିରେ ପରିଶ୍ରମ, ଅନୁଶୀଳନ, ଅଧ୍ୟୟନ, ସାଧନାର ପ୍ରଶ୍ନ କେଉଁଠି ?

ହଁ, ହଁ, ଏଇଟା ଶସ୍ତା ବଜାରଲୋକ । ଶସ୍ତାରେ ସ୍ୱାନସ୍ତା । ଏ ଚିନ୍ତା ଏବର ଓ ଏଇଠିକାର ହୋଇପାରେ । କିନ୍ତୁ କାଳକାଳର ନୁହେଁ । ସାରା ବିଶ୍ୱର ନୁହେଁ । ସାଧନା ସମସ୍ତଙ୍କର ସବୁ କାଳର ମନ୍ତ୍ର । ସାଧନାର ସୂତ୍ରରେ ସମସ୍ତେ ସବୁଠି ବନ୍ଧା । ସାରା ପୃଥିବୀରେ ଦେଶ, ବର୍ଣ୍ଣ, ଧର୍ମ, ସମ୍ପ୍ରଦାୟ; ଭାଷା ଆଦିର ବିଭାଗ ନାହିଁ ଅଛି କେବଳ ଦୁଇଟି ବିଭାଗ, ସାଧକ ଓ ଅସାଧକ । ସାଧକ ଶ୍ରେଣୀର ଲୋକମାନେ ଆଗେଇ ଚାଲିଛନ୍ତି । ସୁଖ ଓ ସମୃଦ୍ଧି ସେମାନଙ୍କର ଓ ପ୍ରଗତି ସେମାନଙ୍କ ହାତ ମୁଠାରେ । ତେଣୁ ସାଧନା ହିଁ ଏକ ମନ୍ତ୍ର ଓ ଏକ ସୂତ୍ର ।

* *

# ପେଟୁ ପୋଟଳ

ପିଲାଟି ସାନ, ସାନ ଘରଟିରେ ରହେ । ଚାଳ ଘର, କାନ୍ଥ ନାହିଁ, ହାତ ଚାଳଆ ଘର । ଚାଳ ମାଟିକୁ ଲାଗିଛି । ମା'ଟି ଓ ପୁଅଟିଏ । ଏଇ ବଖୁରିରେ ସବୁ କିଛି; ରୋଷେଇ, ଶୁଆବସା, ଘରକରଣା ଇତ୍ୟାଦି । ସବୁ କିଛି ସାନ, ଅଳ୍ପ ଅଳ୍ପ । ମୁଠେ ଚାଉଳ, କଂସେ ଭାତ, ବକଟେ ବକଟେ କନା, ଛିଣ୍ଡା ଛିଣ୍ଡା ଜାମା, କନା କଉପୁନ । ଏଠି ସାନ କିନ୍ତୁ ହୀନ ନୁହେଁ, ସାନ ହୋଇଛି ସୁନ୍ଦର । ସୁନ୍ଦର ଆକାର । ସୁନ୍ଦର ବିଚାର । ସାନ କିନ୍ତୁ ଭାରି ସୁନ୍ଦର ।

ପିଲାଟିର ନାମ ପୋଟଳ । ମୁହଁଙ୍ଗିଆ, ଠିକ୍ ପୋଟଳ ପରି । ନଳୀ ଗୋଡ଼ ସରୁ ସରୁ । ଛାତି ଛୋଟ, ମୁଣ୍ଡ ସାନ । ଆଖି ଦରଣିଆ ପେଟଟିଏ, ସେ ପେଟୁ ନୁହେଁ । ମନେ ପାଣି, ଗିନାଏ ତୋରାଣି, ଗଣ୍ଡେ ଭାତ, ପେଟ ପୂରେ ନାହିଁ । ଗଣେଶ ପେଟିଆ, ବିଦ୍ୟା, ବୁଦ୍ଧି, ବିଚାର ଅଛି କି ନାହିଁ କିଏ କହିବ ? ବଡ଼ ପେଟ, ଆକାର ପୋଟଳିଆ, ସେଥିଲାଗି ସେ ପେଟୁ ପୋଟଳ । ସ୍କୁଲ ହାଜିରାରେ ପେଟୁ ପୋଟଳ । ଇମିତି ନାଁରେ ବାରି ହୋଇଯାଏ । ଡାକରେ ପେଟୁ, ବେଳେବେଳେ ପେଟୁ ପୋଟଳ, କେତେବେଳେ ଖାଲି ପୋଟଳ ।

ସକାଳ ହୋଇଛି । ପେଟୁ ସକାଳେ ଉଠି ପଡ଼ିଛି । ଯାଇତାଇ ଦାନ୍ତ ଘସି ଜଳ ଖାଉଛି । ହାଣ୍ଡି ଅଣ୍ଡାଳି ଦି' ଗୁଣ୍ଠା ବାଦାମ ପାଇଛି । ଗୋଟେ ଯୋଡ଼େ ଫମ୍ପା, ବାକି କେଇଟାକୁ ଛଡ଼ାଇ ଚୋବାଇଛି ଓ ବାସି ପାଣିରୁ ମୁନ୍ଦେ ପିଇଛି । ଶର୍ଟ ପେଣ୍ଟକୁ ଚାହିଁ ଦେଇଛି । ତାଳି ଉପରେ ତାଳି । ତାଳିକୁ ବାଣି ଖଣ୍ଡକରେ ବାନ୍ଧି ଦେଇଛି । ମନ ଚଞ୍ଚଳ, ଆଜି ସ୍କୁଲରେ ଖେଳ । ବହି ବସ୍ତାନି ଧରି ଘରୁ ବାହାରି ପଡ଼ିଛି । ମନେ ପଡ଼ିଛି,

ବୋଉ ଉଠି ନାହିଁ, ବିଛଣାରେ ପଡ଼ିଛି । ସେ ଯିବ କପରି ? ବୋଉର ହାତମୁଣ୍ଡ ଗରମ, ଜର ହୋଇଛି । ରାତିରୁ କିଛି ଖାଇ ନାହିଁ । ପେଟୁର ମନେ ପଡ଼ୁଛି, ସେ ଢାଳରେ ପାଣି ରଖି ଦେବ । କଣା ଢାଳଟା, ପାଣି ବହିଯିବ । ସୋଲ ଚୂଣ୍ଡା ଭଲ କରି ସେ ଦେଇଛି । ଏଥର ପାଣି ରହିବ । ବାଡ଼ିରୁ ଦାନ୍ତକାଠି ଆଣି ଢାଳ ପାଖରେ ରଖିଛି । ବୋଉ ଘେଞ୍ଚିବାଇ ପାରିବ କି ? ଆଜିକୁ ତିନି ଦିନ ହେଲା ବୋଉ ଦେହରୁ ତାତି ଛୁଡ଼ି ନାହିଁ । ଦାନ୍ତ ପାଟି ବଥା । ଟିକି ଶିଳ ଉପରେ ଧୀରେ ଧୀରେ ଦି' ପାହାରରେ ଦାନ୍ତକାଠିକୁ ଛେଚି ଦେଇଛି । ଏବେ ରୁଆ ବାହାରିବ । ତେବେ ବୋଉ ଖାଇବ କଅଣ ? ମାଣି ମନେ ପିଇବାକୁ ଓ ପୋଡ଼ା କନ୍ଦମୂଳରୁ ଖଣ୍ଡେ ଖାଇବାକୁ ରଖି ଦେଇ ଟେକଣି ବାହାରି ପଡ଼ୁଛି ପେଟୁ ପୋଟଳ । ମନ ଚଞ୍ଚଳ । ଚଞ୍ଚଳ ପାଦ ପଡ଼ୁଛି ବଟଲିଇର ପାଦ ପରି, କାରଣ ସେ ଯେ ଆଜି ବାଲବୁଢ଼ ।

ଏକ ନିଶ୍ୱାସରେ ସେ ପହଞ୍ଚିଛି ଖେଳ ପଡ଼ିଆରେ । ସବୁଦିନିଆ ଖୁଲ ଆଜି ନାହିଁ । ସେ ବୁଝିଛି ଧୀରି ପାଣି ପଥର କାଟେ । କାମରେ ସେଇଆ ଗୋଳିଆ ପେଟଟେ, ତା ଉପରେ ସିଲଟ ଖାତା ଓ ବହି ଦି'ଖଣ୍ଡ ଜାବୁଡ଼ି ଦେଇ ମନ ମନ୍ଥର ଖୁଲ, ଦେଖିବାର କଥା; ମାଛଟିଏ, ପିମ୍ପୁଡ଼ିଟାଏ ମରିବ ନାହିଁ । ଅହିଂସାର ଆଦର୍ଶ ଓ ମହାବୀରଙ୍କ ସାଧନା । କିନ୍ତୁ ଆଜି ଦି'ପାଦରେ ଧପଡ଼ି ଦେଇଛି । ଗୋଟିଏ ରହାରେ ପଡ଼ିଆରେ ପାଦ ପଡ଼ୁଛି । ଖେଳିବ, ଧାଇଁବ ଓ ମିଶିବ । ସାଙ୍ଗ ହେବ ଓ ସାଥୀ କରିବ । କିନ୍ତୁ କାହିଁ ? କେହି ନାହାନ୍ତି । ସବୁ ଶୁନ୍‌ଶାନ୍ । ପଡ଼ିଆଟାରେ ଗୋଟିଏ ବି ପିଲା ନାହାନ୍ତି । ମଶାଣୀଭୂଇଁ ପରି ଖାଇ ଗୋଡ଼ାଉଛି । ଆଜି ଖେଳ ବନ୍ଦ । କାହିଁକି ? କେହି କହୁ ନାହିଁ, କାହାରିକୁ ଜଣା ନାହିଁ । ପୋଟଳର ବଡ଼ ରାଗ । ଘରେ ମାଙ୍ଗ ମା । ପିଲିକାନ୍ତ ବାପା ନାହାନ୍ତି । ସେ ଏକାକୀ । ପାଠପଢ଼ାରେ ବି ସେଇଆ । ଖେଳରେ ମେଳ । ବୁଦ୍ଧି, ବିବୃଦ୍ଧି ମେଳା ମେଳ ।

ହେଉ, ଆଜି ପୋଟଳ ପଢ଼ିବ ନାହିଁ । ମା'ଟା ବିଛଣାରେ ପଡ଼ିଛି । ଉଠିଛି କି ନାହିଁ ସେ ଜାଣେ ନାହିଁ । ପାଣି, ଦାନ୍ତକାଠି ଓ କନ୍ଦମୂଳ

ଥିଆ ହୋଇଥିବ । ସବୁ କଥା ମନେ ପଡ଼ୁଛି । ମନ ତା'ର ଅଥୟ । ସେହି ବାଟରେ ସେ ଫେରୁଛି । ଏଥର ଆଉ ସେ ଅଣନେଶ୍ବାସୀ, ଦୌଡ଼ ନାହିଁ । ଗଣି ଗଣି ପାଦ ପଡ଼ୁଛି । ପଛକୁ ଅନାଉଛି, କାଳେ ଶିକ୍ଷକ ଦେଖି ଦେବେ । ହାତ ଧରି ଝିଙ୍କି ନେବେ । ପାଠପଢ଼ା ଯାଗାରେ ହାତ ଯୋଡ଼ି, ଆଖି ବୁଜି ବସାଇ ଦେବେ । ମହାଭୟ, ସେଥିରୁ ସାଗ ହ ବଢ଼ୁଛି । କିନ୍ତୁ ପଛକୁ ଅନାଇବା ସେ ଛାଡ଼ୁ ନାହିଁ । ମାଡ଼କୁ କାହାର ଭୟ ନାହିଁ । ଏ ଯାଏ ମାଡ଼ର ମରୁଡ଼ି ହୋଇ ନାହିଁ । ଏ ଶତାବ୍ଦୀ ଯାଉଛି । ଏକବିଂଶ ଶତାବ୍ଦୀ ଆସୁଛି ସେତେବେଳକୁ ମାଡ଼ ଉଠି ଯାଇଥିବ ପରା । ଏ ହିସାବ ହି ପେଣ୍ଟୁ କରୁଛି । କିନ୍ତୁ ପେଟ ତା'ର କଅଁଳ ହକଳ । ସେ ମାକୁ ଦେଖିବ । ମୁଣ୍ଡ ଧରି ଉଠାଇ ଦେବ । ହାତରେ ଦାନ୍ତକାଠି ଧରାଇ ଦେବ । ପାଣି ଦେବ । କନ୍ଦମୂଳ ଗ୍ଲେପା ଛଡ଼ାଇ ଦେବ । ଠିକ ଠିକ କରି ପାଟିରେ ଦେବ । ତଣ୍ଟିରେ ଅଟକି ଗଲେ ବୁନ୍ଦେ ବୁନ୍ଦେ ପାଣି ଦେବ । ପଣା ସଂକ୍ରାନ୍ତି କଥା ମନେ ପଡ଼ୁଛି । ତୁଳସୀ ଗଛ ଉପରେ ମାଠିଆ ଦୃଶ୍ୟ ସେ ଦେଖୁଛି । ହଠାତ୍ ଖାଲରେ ଗୋଡ଼ ପଡ଼ୁଛି । ପେଣ୍ଟୁ ପୋଟଳ ଗଡ଼ ଗଡ଼ ଯାଉଛି । ଅଚେତ ସେ । ଆଖି ଖୋଲି ସେ ଦେଖୁଛି ସେ ଡାକ୍ତର-ଖାନାରେ ଶୋଇଛି । 'ପେଣ୍ଟୁ' ଡାକ ଶୁଣିବାମାତ୍ରେ ଚେତା ପଶିଛି । ପାଖରେ ପେଣ୍ଟୁର ମା ।

କେତେ ଦିନ ଯାଇଛି । ପଢ଼ା ଗୁଳୁଛି ! ସ୍କୁଲକୁ ଯାଉଛି । ସେଇ ରାସ୍ତା, ସେଇ ଗୁଳ । ଏଥର ସେ ବୃଦ୍ଧ 'ନୁଚର୍ହି' ଙ୍କ ମହାବୀର ନୁହେଁ । ସେ ବୈଜ୍ଞାନିକ, ଶିଳ୍ପୀ ଓ କାରିଗର । ସେ ରାସ୍ତାକୁ ଦେଖୁଛି । ଖାଲଗୁଡ଼ିକୁ ଦେଖୁଛି । ଗଣୁଛି । ପାଣି ଭର୍ତ୍ତି ହୋଇ ସେଗୁଡ଼ିକ ପାଠବହିର ଦ୍ୱୀପପରି ଲାଗୁଛି । କିନ୍ତୁ ଏସବୁ ଶଗଡ଼ ତିଆରି ! ଖାଲକୁ ଦେଖି ସେ ଭୟ କରୁଛି । ଶିକ୍ଷକଙ୍କୁ ଦେଖି ସେ ଯେତେ ଭୟ କରେ ତା'ଠାରୁ ବେଶୀ । କେତେ ପିଲା ଖାଲରେ ପଡ଼ୁଛନ୍ତି । ଖଣ୍ଡିଆ ଖାବରା ହେଉଛନ୍ତି । ରକ୍ତ ବହୁଛି । ଅଚେତ ହେଉଛନ୍ତି । ଏସବୁ ଦେଖି ସେ ଆଜି ଇଞ୍ଜିନିୟର । ମୁଠେ ମୁଠେ ବାଲି ଓ କେଇମୁଠା ଗୋଡ଼ିରେ ସେ ଭର୍ତ୍ତି କରୁଛି । ତା'ର ହାତ ବାଲି ବଲ ବଲ । ଚାଳପକା ପ୍ୟାଣ୍ଟରେ ପୋଛି ଦେଉଛି । ତେ ପ୍ୟାଣ୍ଟ ମଇଳା କାହିଁକି ହେଉଛି । ମୁଁ କିଏ ଧୋଉଥିବ କି ? ମା'ର ଏ ପ୍ରଶ୍ନରେ

ପୁଅ ପେଠୁ ପୋଠଳ ନୀରବ । ସବୁ ପ୍ରଶ୍ନରେ ସେ ନିରୁତ୍ତର । କାମ ସର ନାହିଁ, ଉତ୍ତର କାହିଁ ?

ଏସବୁ ସାନ, ଠିକ ଠିକ । କିନ୍ତୁ ହୀନ ନୁହେଁ । ଏସବୁ ସାନ ଓ ଅତି ସୁନ୍ଦର । ଯେତେ ସାନ ସେତେ ସୁନ୍ଦର । ସାନ କିନ୍ତୁ ମହାନ ।

* *

# ଭୀମର ବଳ ସମସ୍ତଙ୍କ ସମ୍ବଳ

ଜଉ ଘର ଦାଉ ଦାଉ ହୋଇ ଜଳିଲା । ନିଆଁ ହୁ ହୁ ହୋଇ ଉପରକୁ ଉଠିଲା । ପାଣ୍ଡବମାନେ କଣ ମଲେ କି ? ନାଁ, ନାଁ, ପାଣ୍ଡବ-ମାନେ ସୁଡ଼ଙ୍ଗ ବାଟେ ଲୁଚି ପଳାଇଲେ । ରାତି ରାତି ଚାଲିଥାନ୍ତି, ବଣ ଭିତରଟା, କେତେ କଣ୍ଟା, ଖୁଣ୍ଟା, ଲହୁଲୁହାଣ ହେଲେଣି, ଖାଇବା ନାହିଁ । ମା କୁନ୍ତୀ ଓ ପାଞ୍ଚ ପିଲା ଚାଲି ଚାଲି ଗଙ୍ଗାକୂଳେ ପହଞ୍ଚିଲେ । ଦୁର୍ଯ୍ୟୋଧନର ଅହନ୍ତା ସେମାନେ ଭୁଲି ନାହାଁନ୍ତି । ତେଣୁ ହସ୍ତିନାକୁ ଆଉ ଫେରିବେ କାହିଁକି ?

ଗଙ୍ଗା ପାର ହୋଇ ସେ ପାରିକୁ ଗଲେ । ଲୁଗାପଟା ଛାଡ଼ି ଗଛର ବକଳ ପିନ୍ଧିଲେ । ଜଟା ବାନ୍ଧିଲେ । ଋଷିବେଶ ହୋଇଗଲା । ଶିକାର କରନ୍ତି, ଖାଆନ୍ତି । ବେଦ ଉପନିଷଦ ପଢ଼ନ୍ତି । ମାର ସେବା କରନ୍ତି । କେତେଦିନ କଟିଗଲା । ଦିନେ ହଠାତ୍ ବ୍ୟାସଦେବଙ୍କୁ ଭେଟିଲେ । ସେ ତ ତାଙ୍କର ବାପର ବାପ । ଏମାନଙ୍କୁ ଦେଖି ଖୁସି ହେଲେ । ତାଙ୍କ ଆଖିରେ କୌରବ ଓ ପାଣ୍ଡବ ସମାନ । କିନ୍ତୁ କୌରବଙ୍କର ହିଂସା ଅଛି । ଏହା ଜାଣି ସେ ପାଣ୍ଡବମାନଙ୍କୁ ଏକଚକା ସହରରେ ରହିବାର ବନ୍ଦୋବସ୍ତ କରିଦେଲେ ।

ସେଠି ବ୍ରାହ୍ମଣ ଘରଟିଏ ମିଳିଲା । ଦିନଯାକ ବୁଲି ଭିକ ମାଗନ୍ତି । ଯାହା ମିଳେ ଘରେ ମିଶାଇ ଦୁଇଭାଗ କରନ୍ତି । ବଡ଼ପେଟା ଭୀମ ଭାଗେ ଖାଏ ଓ ଆଉ ଭାଗକ ଚାରି ଭାଇ ଓ କୁନ୍ତୀ ବାଣ୍ଟିକୁଣ୍ଟି ଖାଆନ୍ତି । ଦିନେ ଯୁଧିଷ୍ଠିର, ଅର୍ଜ୍ଜୁନ, ନକୁଳ ଓ ସହଦେବ ବାହାରକୁ ଯାଇଥାନ୍ତି । ଏକା ଭୀମ ମା'ଙ୍କର ସେବା କରୁଥାନ୍ତି । ଏତିକିବେଳେ ବ୍ରାହ୍ମଣ ଘରେ କାନ୍ଦ-ବୋବାଳି ଶୁଭିଲା ! କୁନ୍ତୀ ବିକଳ ହେଲେ, "କି ବିପଦ ପଡ଼ିଲା ? ସେ ବ୍ରାହ୍ମଣ ଆମକୁ ସ୍ନେହ କରନ୍ତି । ଆଶ୍ରୟ ଦେଇଛନ୍ତି । ଆମେ କଅଣ ସ୍ୱାଙ୍କର କିଛି ଉପକାର କରିବା ନାହିଁ ।"

ତୁମ କଅଣ ଚୁପ୍ ହୋଇ ରହିବା ଲୋକ । "ମା, ବୁଝିଆସ । କଥା କଅଣ ? ଆମେ କିଛି କରିବା ।" ପୁଣି କାନ୍ଦ ଶୁଭିଲା । କୁନ୍ତୀ ଦେଖନ୍ତି ଯେ ବ୍ରାହ୍ମଣ ବକଳରେ ରଡ଼ି ଛାଡ଼ୁଛନ୍ତି । "ମୁଁ ଏ ଗାଁରୁ ପଳାଇ ଯାଇ-ଥିଲେ ହୋଇଥାନ୍ତା । ଏବେ କରିବି କଅଣ ?"

କାହାକୁ ଛାଡ଼ିବି ? ମୁଁ ଗଲେ ବା ତୁମ୍ଭେମାନେ କରିବ କଅଣ ? ଘର ଧରାପରା ହୋଇ ସମସ୍ତେ ମରିବା । ବ୍ରାହ୍ମଣୀ କଅଣ ବ୍ରାହ୍ମଣଙ୍କୁ ଛାଡ଼ିଦେବେ ? "ନାଁ ନାଁ, ମୁଁ ଯିବି । ମୁଁ ଗଲେ କାହାକୁ ବାଧିବ ନାହିଁ । ତୁମେ ତ ଗଲେ ସମସ୍ତେ ଛୁଁ ଛୁଁ ମରିଯିବେ ।"

ବ୍ରାହ୍ମଣଙ୍କ ଝିଅ ବି ସେପରି । ତୁମେ କେହି ଯିବ ନାହିଁ । ମୁଁ ତ ଦିନେ ନା ଦିନେ ଯାଆନ୍ତି । ଝିଅ ଜନମ ସିନା ପରଘରକୁ । ବାପା ହେଲେ ପରବଶ ହେବ । ଭାଇଟି ପିଲା । ତାକୁ ଦେଖ ରହ, ମୁଁ ଯାଉଛି ।

ଏଥିରେ କାହାର ହୃଦୟ ତରଳି ନ ଯିବ ? ଝିଅକୁ କୁଣ୍ଢାଇ ଭୋ ଭୋ ସମସ୍ତେ କାନ୍ଦିଲେ ।

ଛୋଟ ପିଲଟା । ସେ ଧାଇଁ ଆସିଲା । ହାତରେ ବାଡ଼ି, ମୁଣ୍ଡରେ ପଟେଡ଼ି । "ମୁଁ ଯିବି, ସେ ରାକ୍ଷସକୁ ଏଇ ବାଡ଼ିରେ ପିଟି ପକାଇବି । କେହି କାନ୍ଦ ନାହିଁ ।" କୁନ୍ତୀ ଏସବୁ ଦେଖି ଭାଙ୍ଗିଲା, "ମୁଁ କିଛି କରିବି । କୁହ, କଅଣ ହୋଇଛି ?"

ବ୍ରାହ୍ମଣ କହିଲେ, "ମା, ଆମ ଦୁଃଖରେ ହଇବ ସାହା । ମର୍ଣରେ କାମ ନୁହେଁ । ଆମ ନଗର ବାହାରେ ବକ ବୋଲି ଗୋଟିଏ ରାକ୍ଷସ ଅଛି । ସେ ଆମକୁ ବାଘ, ଭାଲୁ ଓ ଶତ୍ରୁର ହାତରୁ ରକ୍ଷା କରେ । ସେଥିପାଇଁ ଆମେ ତାକୁ ଖାଇବାକୁ ଦେଉଁ । ଗୋଟିଏ ଗାଡ଼ିରେ ପାଳି କରି ଭାତ, ପିଠା ପଠାଉଁ, ହଳେ ମଇଁଷି ଓ ଗୋଟିଏ ମଣିଷ ବି ପଠାଉଁ । ରାକ୍ଷସ ଏତକ ସବୁ ଖାଏ । ପାଳି ଅନୁସାରେ ଏସବୁ ଯେ ନ ପଠାଇବ, ରାକ୍ଷସ ତା ବଂଶକୁ ନିପାତ କରିବ । ଆମ୍ଭେମାନେ ଏମିତି ଥାଉଁ । ଏ ଦେଶର ରାଜା ଆମ କଥା ବୁଝନ୍ତି ନାହିଁ । ଆଜି ମୋର ପାଳି । ମୁଁ ତ ଗରିବ,

ଟଙ୍କା ଥିଲେ ଜଣେ ମଣିଷ କିଣି ପଠାନ୍ତି । ଘରୁ କାହାକୁ ପଠାଇବ ? ସମସ୍ତେ ଯାଇ ରାକ୍ଷସ ମୁହଁରେ ମରିବୁ, ଏହା ଭାବୁଛୁ ।"

କୁନ୍ତୀଙ୍କର ପାଟିରୁ କଥା ବାହାରିଲା ନାହିଁ । ଟିକିଏ ଥୟ ଧରି କହିଲେ, "ମୋର ପାଞ୍ଚ ପୁଅ । ଜଣକୁ ପଠାଇବି, ତୁମେ ଚିନ୍ତା କର ନାହିଁ ।"

ବ୍ରାହ୍ମଣ ହାଲିଆ ହୋଇ କିଛି କହି ପାରିଲେ ନାହିଁ । ପୁଣି କୁନ୍ତୀ କହିଲେ, "କିଛି ଭୟ କର ନାହିଁ । ତୁମେ ମୋ ଭୀମକୁ ଜାଣ ନାହିଁ । ସେ ଭାରି ବଳୁଆ । ସେ ବହୁ ରାକ୍ଷସ ମାରିଛି । ଏ ରାକ୍ଷସ ଅତି ଛାର ।"

ବ୍ରାହ୍ମଣ କିଛି ବୁଝି ନାହାନ୍ତି । ସତେ କଣ ଏହା ହେବ ? ବଳସ୍ତାର ଭୀମ ଏକଥା ଶୁଣୁ ଶୁଣୁ ତିଆରି ହୋଇ ପଡ଼ିଲା । ଏତିକିବେଳେ ଯୁଧିଷ୍ଠିର ଆସି ମା'ଙ୍କୁ ପଚାରିଲେ, "ମା ଆମେ କ'ଣ କରିବା ? ଆମକୁ କିଏ ରଖିବ ?"

କୁନ୍ତୀ କହିଲେ, "ବାବାରେ ଭୀମକୁ ଚିହ୍ନି ନାହଁ । ଦଶ ହଜାର ହାତୀ ତାର କିଛି କରିପାରିବେ ନାହିଁ । ତା ଗୋଡ଼ରେ କଣ୍ଟା ବାଜିବ ନାହିଁ । ଆମେ ତ ବ୍ରାହ୍ମଣର ଦୁଃଖ ଜାଣିଲେ । କିଛି ନ କଲେ ଅଧର୍ମ ହେବ ।"

ଯିବାବେଳ ହେଲା । ଭାତ, ପିଠା ଶଗଡ଼ରେ ରହିଲା । ମଇଁଷି ଦୁଇଟା ଯୋଚି ହେଲେ । ଏମାନଙ୍କୁ ଅଡ଼ାଇ ଭୀମ ବକ ରହିବା ଜାଗାରେ ପହଞ୍ଚିଲା । ମଇଁଷିକୁ ଫିଟାଇ ଆଗ ଭୀମ ଭୋଜନରେ ବସିଗଲେ । ବକାସୁରକୁ ଡାକୁଥାନ୍ତି । କିନ୍ତୁ, ଗୋଟାକୁ ଗୋଟା ଖାଇ ଚାଲିଥାନ୍ତି, ଡାକିବା ଚାଲିଥାଏ, "ରେ ଅସୁର ପିଠା ଖାଇବୁ ତ, ଜଲଦି ଆ ।"

ଏହା ଦେଖି ବକାସୁର ରାଗିଗଲା । ଦାନ୍ତ କଡ଼ମଡ଼ କଲା । ରାଗରେ ଜଳିଗଲା । ଦେହଟାଯାକ ରୁମ ଟାଙ୍କୁରି ଉଠିଲା ।

ଭୋଜନ ମିଳୁଛି । ଭୀମ କଅଣ ସମ୍ଭାଳେ ! ଟିକଏ ଟିକଏ ହସି ଦେଇ ଗଣ୍ଡା ଗଣ୍ଡା ମଣ୍ଡା ଏକାବେଳକେ ପାଟିରେ ଭର୍ତ୍ତି କରୁଥାନ୍ତି । ରାକ୍ଷସ ଗର୍ଜ୍ଜି ଆସି ଭୀମଙ୍କର ବେକ ଧଇଲା । ବାଁ ହାତରେ ଭୀମକୁ ଧଇ ଦୂରକୁ ଗୁଞ୍ଚି ଦେଲେ । ପୁଣି ଗୋଟିଏ ଗଛ ଉପାଡ଼ି ରାକ୍ଷସ ଧାଇଁ ଆସିଲା । ଭୀମର ଖିଆ ସର ଆସୁଥାଏ । ସବୁତକ ପିଠା, ଭାତ ବେଗେ ବେଗେ ଖାଇ ଦେଇ ଠିଆ ହେଲେ । ହସି ହସି ରାକ୍ଷସ ହାତରୁ ଗଛକୁ ଛଡ଼ାଇ ନେଇ ଆଉ ଗୋଟିଏ ଗଛ ଉପାଡ଼ି ଧାଇଁଲେ । ପିଟାପିଟି ଚାଲିଲା, ମରାମରି, ଦୁମ୍‌ଦାମ୍ ଲାଗିଗଲା । ଖଣ୍ଡେ ଭୂଇଁ ପଦା ହୋଇଗଲା । ବନ ଯାଇ ସଞ୍ଜ ହେଲା । ଯୁଦ୍ଧ ଚାଲିଛି । ରାକ୍ଷସର ବଳ ହଟିଗଲା । ତାହାର ବେକ ଧରି ଆଣ୍ଠୁରେ ମୁଣ୍ଡ ବାଡ଼େଇ ଚଟଳ କରିଦେଲେ । ବେକର ହାଡ଼ ଭାଙ୍ଗି ଦେଲେ । ବକ କେଁକାନ ପାଟିଠାଏ କଲା । ଆଉ ରାକ୍ଷସ ଧାଇଁ ଆସିଲେ । ଏହା ଦେଖି ଡରରେ ଅଚର୍ଚ୍ଛ ହୋଇ ପଳାଇଲେ । ସେହି ଦିନଠାରୁ ସେମାନେ ଆଉ ମଣିଷ ଖାଇଲେ ନାହିଁ ।

ଗାଁ ଲୋକଙ୍କର ଆନନ୍ଦର ଢେଉ । ଘରେ ଘରେ ଘଣ୍ଟା ବାଜିଲା । ହରିବୋଲ ହୁଳହୁଳିରେ ସହରଟା ଉଚ୍ଛୁଳି ପଡ଼ିଲା । ଧୂମ୍‌ଧାମ୍ ଉତ୍ସବ ଚାଲିଲା । ପାଣ୍ଡବମାନଙ୍କୁ ସମସ୍ତେ ଆଶୀର୍ବାଦ କଲେ । ଭୀମର ବଳ ସହରର ମନସ୍ତାପର ସମ୍ବଳ ହେଲା ।

* *

# ଆମେ ଗାନ୍ଧୀଙ୍କୁ ବୁଝିବା

ଦୁର୍ଗପୂଜାର ମଉଜ ସରିଲା ! କାଳୀପୂଜା ବି ଗଲା । ସବୁ ସୁଖ ଭାସିଗଲା । ଛୁଟି ଖୋଲୁ ଖୋଲୁ ପାଠ, ପରୀକ୍ଷା ଓ ପ୍ରଶ୍ନର ଚିନ୍ତା ମୁଣ୍ଡକୁ ଘାରିଲାଣି । ଟେଷ୍ଟ ପରୀକ୍ଷା ସରୁ ନ ସରୁ ଶେଷ ପରୀକ୍ଷା ଆସିଯିବ । ତା' ଭିତରେ ଷାଣ୍ମାସିକ ଓ ବାର୍ଷିକ ପରୀକ୍ଷା ବି ହୋଇଯିବ । ଗଦା ଗଦା ବହି ସାଙ୍ଗକୁ ମେଞ୍ଚେ ମେଞ୍ଚେ ପାଠ, ସମ୍ଭାଳିବା ସହଜ ନୁହେଁ । ସହଜରେ ପାଶ କରିବା ପାଇଁ ପ୍ରଶ୍ନ ଜଣାପଡ଼ନ୍ତା କି ? ପରୀକ୍ଷାରେ କେହି କହି ଦିଅନ୍ତା କି ? ଏପରି ଦୁର୍ବଳତା ବି କାହାର କାହାରି ମନରେ ମନକୁ ମାଡ଼ ଦେଉଥିବ । ମାନେ ବହି, ପ୍ରଶ୍ନୋତ୍ତର ବହି ଓ ସମ୍ଭାବିତ ପ୍ରଶ୍ନ—ଏସବୁର ପ୍ରଲୋଭନରେ ମନର ଟାଣ ଟଳିପଡ଼ିବା ସ୍ୱାଭାବିକ ।

ଆମେ ଏଇଠି ଗାନ୍ଧୀଜୀଙ୍କ କଥା ବିଚାରିବା । ପିଲାଦିନେ ସେ ବଡ଼ ଲାଜକୁଳା ଥିଲେ । ଠିକ ଘଣ୍ଟା ବାଜିବାବେଳେ ସ୍କୁଲରେ ପହଞ୍ଚନ୍ତି ଓ ଛୁଟି ହେବାମାତ୍ରେ ପଳାନ୍ତି । କିଏ କାଳେ ଥଟ୍ଟା କରିଦେବ, ଡରୁଥାନ୍ତି । କିନ୍ତୁ ଶିକ୍ଷକ କେଞ୍ଚିଦେଲେ, ଅନ୍ୟ ପିଲାଙ୍କ ଖାତାରୁ 'କେଟ୍‌ଲ୍‌' ଶବ୍ଦର ବନାନ ଦେଖି ଲେଖିବାକୁ, ଇନ୍‌ସପେକ୍ଟର ଖୁସି ହେବେ, ଶିକ୍ଷକଙ୍କ ନାଁ ରହିବ । ତଥାପି ସେ 'ନିର୍ବୁଦ୍ଧିଆ' ସାବ୍ୟସ୍ତ ହେଲେ । ତାଙ୍କ 'ବୋକାମି' ତାଙ୍କୁ ବୁଝାଇ ଦିଆଗଲା । ତଥାପି ସେ କହନ୍ତି, "ଅନ୍ୟ ପିଲାଠୁଁ ଚୋରି କରିବା କେବେହେଁ ମୋ ଦ୍ୱାହାତରେ ହୋଇ ନାହିଁ ।" ଏହା ବି ତାଙ୍କ ଜୀବନଯାକ ହେଲା ନାହିଁ । ସେ ଟାଣ ମଣିଷ ହେଲେ, କାହାକୁ ଡରିଲେ ନାହିଁ । ଆମ ଦେଶଟାକୁ ବି ସେ ଟାଣ କରିଦେଲେ । ନିଜ ଜୀବନରେ ସେ ଭୟକୁ ଜୟ କଲେ ଓ ଛାତ୍ରମାନଙ୍କୁ ନିର୍ଭୀକ ହେବାକୁ କହିଗଲେ ।

ସେତେବେଳେ ସମ୍ଭବତଃ ଏତେ ବହି ନ ଥିଲା । ଏବେ ପିଲାଙ୍କ ପାଇଁ ଅନେକ ବହି ହେଲାଣି । କିନ୍ତୁ ପରୀକ୍ଷା ଦାଉରେ ବହିର ମୋହ ଫାଟିଯାଉଛି । ଗାନ୍ଧୀଙ୍କର ବି ପାଠ ବହି ଛଡ଼ା ଅନ୍ୟ ବହି ପଢ଼ିବାର

ସଉକ ନ ଥିଲା । ତାଙ୍କ ପାଠ କଞ୍ଚା ହେବ ନାହିଁ, ସେ ଗାଳି ଖାଇବେ ନାହିଁ ଓ ଶିକ୍ଷକଙ୍କୁ ଠକିବେ ନାହିଁ, ଏଥିପାଇଁ ସେ ପାଠବହିରେ ମନ ଦେଇଥିଲେ ।

କିନ୍ତୁ ଖଣ୍ଡେ ଦି'ଖଣ୍ଡ ବହି ତାଙ୍କୁ ବିଶେଷ ପ୍ରଭାବିତ କରିଥିଲା । ସେ ପିଲାଦିନେ "ଶ୍ରବଣ ପିତୃଭକ୍ତି ନାଟକ" ବହି ଖଣ୍ଡେ ପାଇ ଆଗ୍ରହରେ ପଢ଼ିଥିଲେ । ଏହାର ଗଭୀର ଛାପ ତାଙ୍କ ଉପରେ ପଡ଼ିଲା । ଶ୍ରବଣ ମଲାବେଳେ ତା'ର ବାପ ମା'ଙ୍କ ବିଳାପ ତାଙ୍କ ମନରେ କାଳ କାଳ ରହିଲା । 'ହରିଶ୍ଚନ୍ଦ୍ର' ନାଟକ ବି ତାଙ୍କୁ ସେହିପରି ଆନ୍ଦୋଳିତ କରିଥିଲା । ସେ ହରିଶ୍ଚନ୍ଦ୍ରଙ୍କ ଦୁଃଖରେ କାନ୍ଦିଛନ୍ତି । ହରିଶ୍ଚନ୍ଦ୍ର ଓ ଶ୍ରବଣ ବୁଢ଼ା କାଳ-ଯାଏ ତାଙ୍କ ମନରେ ଜୀବିତ ଅଛନ୍ତି । ଏବର ଗଦା ଗଦା ବହି, ମେଞ୍ଚା ମେଞ୍ଚା କାଗଜ ଗାନ୍ଧୀଙ୍କ ଭାଗ୍ୟରେ ମିଳି ନ ଥିଲା । ସେ ଅଳ୍ପ ବହି ପଢ଼ି-ଥିଲେ ଓ ତାକୁ ଭଲକରି ହଜମ କରିଥିଲେ । ଉଲ୍ଲେଖଯୋଗ୍ୟ ଖଣ୍ଡେ ବହି ହେଉଛି "ଅନ୍ ଟୁ ଦି ଲାଷ୍ଟ"—ଏହା ରସ୍କିନ୍‌ଙ୍କର ଲେଖା । ପୋଲାକ୍ ସେ ବହିଖଣ୍ଡିକୁ ତାଙ୍କୁ ରେଳଗାଡ଼ିରେ ପଢ଼ିବାପାଇଁ ଦେଇଥିଲେ । ଜୋହାନ୍ସବର୍ଗରୁ ଡର୍ବାନ୍ସ ୨୪ ଘଣ୍ଟାର ବାଟ । ଏତିକି ଭିତରେ ସେ ବହି ଶେଷ କରି ବହିରେ ସୂଚିତ ଆଦର୍ଶକୁ କାମରେ ଲଗାଇଥିଲେ । ଏହାହିଁ ରସ୍କିନ୍‌ଙ୍କର ଗ୍ରନ୍ଥରହିର କୁହୁକ ।

ଗାନ୍ଧିଜୀ ସହଜରେ ନିଜ ଭୁଲ ସ୍ୱୀକାର କରନ୍ତି । "ପାଠପଢ଼ାରେ ଭଲ ଅକ୍ଷର ଲେଖିବା ଦରକାର ନାହିଁ", ଏ ଧାରଣା ତାଙ୍କର ଭୁଲ ଓ ସେଥିପାଇଁ ସେ ଦଣ୍ଡ ଭୋଗିବାକୁ ସ୍ୱୀକାର କରିଛନ୍ତି । ତାଙ୍କୁ ଲାଜ ଲାଗିଛି ଓ ସେ ଅନୁତାପ କରିଛନ୍ତି । "ଖରାପ ଅକ୍ଷର ଅଧାପାଠର ଚିହ୍ନ ବୋଲି ଧରାଯିବା ଉଚିତ"—ଏହା ତାଙ୍କର ମତ । ସାଙ୍ଗମେଳରେ ମାଂସ ଖାଇବା, ମିଛ କହିବା, ବିଡ଼ି ଟାଣିବା ଆଦି କେତେକ ପାପାଚରଣ କରିବା ସେ ସ୍ୱୀକାର କରିଛନ୍ତି । 'ବଳୁଆ ଓ ନିର୍ଭୀକ' ହେବା ଆଶାରେ ସେ ମାଂସ ଖାଇଥିଲେ । ଇଂରେଜଙ୍କୁ ହରାଇବା ତାଙ୍କ ଉଦ୍ଦେଶ୍ୟ ଥିଲା । ସେ ନିଜ ବନ୍ଧୁଙ୍କୁ ବିଶ୍ୱାସ କରିଥିଲେ ଓ ବନ୍ଧୁପଣିଆରେ ଆସ୍ଥା ରଖି-ଥିଲେ । ଥରେ ଚୋରି କରି ସେ ବାପାଙ୍କ ପାଖରେ ଦୋଷ ସ୍ୱୀକାର

କରିବା ଉଚିତ ବୋଲି ଭାବୁଥିଲେ । ବାପା ରାଗନ୍ତି, କଟୁକଥା କହନ୍ତି ଓ ମୁଣ୍ଡ କୋଡ଼ି ହୁଅନ୍ତି ! ଏହା ସତ୍ତ୍ୱେ ସେ ଚିଠିରେ ନିଜ ଦୋଷ ମାନିଲେ । ବାପା କିନ୍ତୁ କାନ୍ଦିଲେ, ଚିଠି ଚିରିଗଲା । ସେ ବି ବାପାଙ୍କ ଦୁଃଖ ଜାଣି କାନ୍ଦିଲେ ।

ନିଜ ଜୀବନକୁ ଶୁଦ୍ଧ କରିବାକୁ ସେ ପଣ କରିଥିଲେ । ତାଙ୍କ ବାପାଙ୍କ ବିଶୁଦ୍ଧ ପିତୃପ୍ରେମରେ ସେ 'ଅହିଂସା'ର ବାସ୍ତବ ଚିହ୍ନ ଦେଖି-ଥିଲେ । ଏହିଭଳି ନାନା ଘଟଣା ଘଟିଛି । ପିଲାଟିଠୁଁ ବୁଢ଼ା ହେବାଯାଏ ସବୁଠି ସବୁ କଥାରେ ସେ ସତ୍ୟର ପ୍ରୟୋଗ କରିଛନ୍ତି । ପ୍ରୟୋଗ କରି ଦେଖିବା ଓ ପରଖିବା ତାଙ୍କର ଢଙ୍ଗ ଥିଲା । "ଆପଣ ଆତ୍ମକଥା କାହିଁକି ଲେଖୁଛନ୍ତି ? ଏହା ଏକ ବିଲାତି କଥା" ବୋଲି ଜଣେ ପ୍ରଶ୍ନ କରିଥିଲେ । ତାର ଉତ୍ତରରେ ଗାନ୍ଧିଜୀ କହିଥିଲେ, "ମୁଁ ସତ୍ୟର ଯେ ସମସ୍ତ ପ୍ରୟୋଗ କରିଛି, ଆତ୍ମକଥା ବାହାନାରେ ସେ ସବୁ ପ୍ରୟୋଗର ବର୍ଣ୍ଣନା କରିବା ମୋର ଉଦ୍ଦେଶ୍ୟ ।" ତତ୍ତ୍ୱ ବା ସିଦ୍ଧାନ୍ତର ବର୍ଣ୍ଣନା ପାଇଁ ସେ ଆତ୍ମକଥା ଲେଖି ନ ଥିଲେ । ବର୍ଣ୍ଣନାରେ ଅହମିକା ବି ନ ଥିଲା । ପ୍ରୟୋଗରେ ପୂର୍ଣ୍ଣତାର ଦାବି ନ ଥିଲା । ତାଙ୍କ ଆତ୍ମକଥାର ନାମ ପ୍ରଥମେ 'ସତ୍ୟର ପ୍ରୟୋଗ' ଦେଇଥିଲେ । "ଏ ସତ୍ୟ କେବଳ ବଚନର ସ୍ଥୂଳ ସତ୍ୟ ନୁହେଁ, ଏହା ଯେପରି ବଚନରେ, ସେହିପରି ବିଚାରରେ ମଧ୍ୟ ସତ୍ୟ । ଏ ସତ୍ୟ ଆମର କଳ୍ପନାର ସତ୍ୟ ନୁହେଁ, କିନ୍ତୁ ଏହା ସ୍ୱତନ୍ତ୍ର ଚିରସ୍ଥାୟୀ ସତ୍ୟ । ଅତଏବ ଏହା ସ୍ୱୟଂ ଭଗବାନ ।"

ଆମ୍ଭେମାନେ ଏହି ସତ୍ୟସନ୍ଧାନୀ ହୋଇ ପାରନ୍ତେ କି ? ଗାନ୍ଧୀ ଏହି ସତ୍ୟସନ୍ଧାନରେ ଜୀବନ ଅତିବାହିତ କରିଥିଲେ । ଏଥିରେ ସେ ତାଙ୍କର ସବୁଠାରୁ ପ୍ରିୟ ଜିନିଷ ଏପରିକି ଦେହକୁ ସୁଦ୍ଧା ତ୍ୟାଗ କରିବାକୁ ପ୍ରସ୍ତୁତ ଥିଲେ । "ମୋଭଳି ଶହ ଶହଙ୍କର ସର୍ବନାଶ ହେଉ ପଛେ ମାତ୍ର ସତ୍ୟର ଜୟ ହେଉ । ଅଳ୍ପାତ୍ମାକୁ ମାପିବା ପାଇଁ ସତ୍ୟର ମାପକାଠି ଛୋଟ ନ ହେଉ ।" ଜୀବନରେ ଓ ମୃତ୍ୟୁପରେ ସେ ଏହି ଉକ୍ତିର ଅମର ପ୍ରତୀକ ।

୧୯୨୫ ମସିହା ବେଳକୁ ଗାନ୍ଧିଜୀ ସାତୋଟି ସାମାଜିକ ପାପର ବର୍ଣ୍ଣନା କରିଥିଲେ । ସେସବୁ ହେଉଛି ନୀତିହୀନ ରାଜନୀତି ( Politics

without principles), କର୍ମହୀନ ଧନାର୍ଜ୍ଜନ (Wealth without work), ବିବେକବିବର୍ଜ୍ଜିତ ସୁଖ (Pleasure without conscience), ଚରିତ୍ରହୀନ ଜ୍ଞାନ (Knowledge without character), ନୈତିକତା ବିହୀନ ବ୍ୟବସାୟ (Commerce without morality), ମାନବିକତାରୁ ବଞ୍ଚିତ ବିଜ୍ଞାନ (Science without humanity) ଓ ତ୍ୟାଗ ରହିତ ପୂଜା (Worship without sacrifice) । ଆମ୍ଭେମାନେ ଏହିସବୁକୁ ବୁଝିବା ଓ ନିଜ ଜୀବନରେ ଫଳେଇବା । ଗାନ୍ଧି ପୋଥି ବାଇଗଣ ନୁହନ୍ତି । ସେ ପୋଥିଗତ ଶିକ୍ଷାର ଘୋର ବିରୋଧ କରିଥିଲେ । ତେଣୁ ପୋଥିରେ ଗାନ୍ଧୀ ସୀମିତ ହେଲେ ଆମର ବ୍ୟକ୍ତିଗତ ତଥା ଜାତୀୟ ଓ ଆନ୍ତର୍ଜାତିକ ଜୀବନ ବିପର୍ଯ୍ୟସ୍ତ ହେବ ।

ଏହି ଢଙ୍ଗର ପରିକଳ୍ପନାକୁ କାର୍ଯ୍ୟକାରୀ କରିବାପାଇଁ ସେ ସମାଜର ସବୁ ଶ୍ରେଣୀକୁ ନିବେଦନ କରିଛନ୍ତି । ସମସ୍ତଙ୍କ ସହିତ କାମ କରିଛନ୍ତି । ସମସ୍ତଙ୍କୁ ବୁଝିବାକୁ ଚେଷ୍ଟା କରିଛନ୍ତି । ସମସ୍ତଙ୍କ ହୃଦୟରେ ସତ୍ୟ ଓ ଅହିଂସାର ଉଦୟ ହେଉ —ଏଥିପାଇଁ କାମ କରିଛନ୍ତି । ସ୍ୱାଧୀନ ଭାରତର ପରିକଳ୍ପନାରେ ହିଂସା ଓ ଦ୍ୱେଷର ସ୍ଥାନ ନ ଥିଲା । "ବ୍ରିଟେନକୁ ଧ୍ୱଂସ କରି ଭାରତର ସ୍ୱାଧୀନତା କାମ୍ୟ ନୁହେଁ ।"

ଭାରତର ତଥା ବିଶ୍ୱର ଯୁବସମାଜ ତାଙ୍କର ଅତି ପ୍ରିୟ ଥିଲେ । ସେମାନଙ୍କୁ ଗଢ଼ିବା ଓ ସମାଜର ପୁନର୍ଗଠନରେ ସେମାନଙ୍କୁ ସାହାଯ୍ୟ ନେବାପାଇଁ ସେ କାର୍ଯ୍ୟପନ୍ଥା ସ୍ଥିର କରିଥିଲେ । ଭାତ ଥାଳରେ ଅଇଁଠା ନ ଛାଡ଼ିବା, ଗାଁ କାମ କରିବା ଆଦି ସାନ ବଡ଼ ସବୁ କାମରେ ସେ ଯୁବଶକ୍ତିର ସାହାଯ୍ୟ ନେଉଥିଲେ । ଆତ୍ମସଂଯମ ଓ ହୃଦୟବତ୍ତା ସେମାନଙ୍କର ଲକ୍ଷ୍ୟ ହେବାପାଇଁ ପରାମର୍ଶ ଦେଇଥିଲେ । ଚରିତ୍ର ଓ ହୃଦୟ ଏ ଦୁଇଟି ହେଲେ ସ୍ୱରାଜ ହୋଇଯିବ । ହରିଜନ ସେବା, ଅସ୍ପୃଶ୍ୟତା ନିବାରଣ, ବେକାର ସମସ୍ୟା, ଖଦୀକାମ, ଗାଁ କାମ ଇତ୍ୟାଦି ଯୁବମାନେ ବଡ଼ ବଡ଼ ଛୁଟିରେ କରନ୍ତୁ, ଗାଁ ଲୋକଙ୍କ ସହିତ ମିଶନ୍ତୁ, ସେଥିପାଇଁ ସେ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ରଖିଥିଲେ । ଯୁବମାନେ ଉପରଠାଉରିଆ ଭାବରେ ଏହା ନ କରି ହୃଦୟ ସହିତ ଏ ସବୁ କାମ କଲେ ଗାଁ ଲୋକଙ୍କର ହୃଦୟର

ପରିବର୍ତ୍ତନ ହେବ, ଏ ବିଶ୍ୱାସ ତାଙ୍କର ଥିଲା ଓ ସେ ଦିଗରେ ସେ କାମ କରିଥିଲେ ।

ସେ ବାଙ୍ଗାଲୋରଠାରେ ଗୋଟିଏ ଗୁଣସଭାରେ ଉଦ୍‌ବୋଧନ ଦେଇ କହିଥିଲେ, "ଆପଣମାନେ ଗୋଟିଏ ବଡ଼ ବେତାର ଯନ୍ତ୍ର ଉଦ୍‌ଭାବନ କରି ପାରିବେ, ଏଥିପାଇଁ ବାହାରିଆ ଗବେଷଣା ଦରକାର ନାହିଁ, କିନ୍ତୁ ଅନ୍ତରର ଗବେଷଣା ଆବଶ୍ୟକ—ସମସ୍ତ ଗବେଷଣା ବସ୍ତୁତଃ ବୃଥା ହେବ ଯଦି ଏହା ଅନ୍ତରର ଗବେଷଣ ସହିତ ସଂଯୁକ୍ତ ନ ହୁଏ । ଏହି ବେତାର ଯନ୍ତ୍ର ସାହାଯ୍ୟରେ ନିଜ ହୃଦୟର ସମ୍ପର୍କ ଲକ୍ଷ ଲକ୍ଷ ଲୋକଙ୍କର ହୃଦୟ ସହିତ ସ୍ଥାପନ କରିପାରିବେ ।"

ଗାନ୍ଧିଜୀ ଯାହା ଲେଖିଛନ୍ତି, ଆମେ କିଛି କିଛି ପଢ଼ିବା ଓ କାମରେ କରିବା । ସେ ଲେଖାର ଅର୍ଥ ବୁଝିବା । ସାରକଥା ହୃଦୟରେ ଧରିବା । ଗାନ୍ଧିଙ୍କୁ ମହାତ୍ମା ଓ ମହାମାନବ କହି ଆମେ ତାଙ୍କୁ ଠକାଇ ଦେବା ନାହିଁ । ସେ ବି ଠକିବାର ଲୋକ ନୁହନ୍ତି । ସେ ଲୋକଙ୍କୁ କହିଛନ୍ତି, "ବ୍ୟକ୍ତି-ଠାରୁ ଆଦର୍ଶ ମହତ୍ତ୍ୱର । ବୀରପୂଜାର ଛଳନା କଲେ ଏହା ଅନ୍ଧବିଶ୍ୱାସ ହେବ ।" ସେଥିପାଇଁ ସେ ଯୁକ୍ତିଯୁକ୍ତ ବିଚାର ଓ ପରୀକ୍ଷା କରି ଦେଇଥିଲେ ଏବଂ ତାହାହିଁ ତାଙ୍କର ଆତ୍ମପ୍ରତ ବାଣୀ ।

* *